# ଚଉତିଶା ସଂକଳନ

ସଂକଳକ

ଡକ୍ଟର **ଜାନକୀବଲ୍ଲଭ ମହାନ୍ତି** ( ଭରଦ୍ୱାଜ )

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

ରେଭେନ୍ସା କଲେଜ, କଟକ

ପରିବେଷକ

**ଗ୍ରନ୍ଥମନ୍ଦିର**

କଟକ : ବ୍ରହ୍ମପୁର

ପରିବେଷକ :

**ଗ୍ରନ୍ଥ ମନ୍ଦିର**

କଟକ : ବ୍ରହ୍ମପୁର

ଓଡ଼ିଶା ସରକାରଙ୍କ
ସାଂସ୍କୃତିକ ବ୍ୟାପାର ବିଭାଗର
ଆଂଶିକ ଅର୍ଥାନୁକୂଲ୍ୟରେ ପ୍ରକାଶିତ ।

ମୁଦ୍ରାକର :

**ଗ୍ରନ୍ଥ ପ୍ରକାଶିନୀ**

ପୁରୀହାଟ, କଟକ-୧

ପ୍ରଥମ ସଂସ୍କରଣ :
ଡିସେମ୍ବର, ୧୯୭୪

ମୂଲ୍ୟ : ଟ ୭-୫୦

# ଆଦ୍ୟଛନ୍ଦ ସୂଚୀ

# ଭୂମିକା

ପ୍ରାଚୀନ ଓଡ଼ିଆ ଗୀତ କାବ୍ୟ ସଂପର୍କରେ ଗବେଷଣାମୂଳକ ଗ୍ରନ୍ଥ ପ୍ରସ୍ତୁତ କରିବା ପୂର୍ବରୁ ମୋତେ ଲୁପ୍ତପ୍ରାୟ ପ୍ରାଚୀନ ଓଡ଼ିଆ ଗୀତକାବ୍ୟ ସଂଭାରର ଅନୁସଂଧାନ କରିବାକୁ ପଡ଼ିଥିଲା । ଏଥିପାଇଁ ଏହି ଲେଖକକୁ ଯେ ବହୁ ବ୍ୟକ୍ତିବିଶେଷଙ୍କ ଠାରୁ ତଥା ବହୁ ଅନୁଷ୍ଠାନରୁ ବିବିଧ ଉପାଦାନ ସଂଗ୍ରହ କରିବାକୁ ପଡ଼ିଛି । ଏହା ଲେଖିବା ଅନାବଶ୍ୟକ । ଏହି ଅବକାଶରେ ଯେଉଁ କେତେକ ପ୍ରାଚୀନ ଅପ୍ରକାଶିତ ଚଉତିଶାର ସନ୍ଧାନ ପାଇଥିଲି ତାହାହିଁ ଏହି ସଙ୍କଳନରେ ସନ୍ନିବିଷ୍ଟ । ଏହି ସମସ୍ତ ଚଉତିଶା ଷୋଡ଼ଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ଶେଷପାଦ ମଧ୍ୟରେ ରଚିତ ।

ଚଉତିଶା ପ୍ରାଚୀନ ଓଡ଼ିଆ ଗୀତ ସାହିତ୍ୟର ଏକ ମୁଖ୍ୟ ବିଭବ । ଭାରତୀୟ ଆଞ୍ଚଳିକ ସାହିତ୍ୟ କ୍ଷେତ୍ରରେ ଓଡ଼ିଆ ଚଉତିଶା-ସାହିତ୍ୟ ସ୍ୱତନ୍ତ୍ର ଗୌରବ ଦାବି କରେ । ପଞ୍ଚଦଶ ଶତକରୁ ଊନବିଂଶ ଶତକର ଶେଷ ଭାଗ ମଧ୍ୟରେ ଓଡ଼ିଶାର ପ୍ରାୟ ପ୍ରତ୍ୟେକ କବି ଚଉତିଶା ରଚନାରେ ଯେ କେବଳ ଆତ୍ମନିୟୋଗ କରିଛନ୍ତି ତାହା ନୁହେଁ; ଚଉତିଶା ରଚନାରୀତି କ୍ଷେତ୍ରରେ ସେମାନେ ବିବିଧ ପରୀକ୍ଷା ପ୍ରୟୋଗ କରି ଏହାକୁ ଯେପରି ବୈଚିତ୍ର୍ୟ ମଣ୍ଡିତ କରିଯାଇଛନ୍ତି ତାହାର ତୁଳନା ଭାରତୀୟ ପ୍ରାନ୍ତୀୟ ସାହିତ୍ୟରେ ବିରଳ । ବହୁବିଧ ବିଷୟବସ୍ତୁ, ବିବିଧ ଛନ୍ଦ ଓ ବହୁ ଆଳଙ୍କାରିକ କାରୁକାର୍ଯ୍ୟ ସମ୍ଭାରରେ ପ୍ରାଚୀନ ଓ ମଧ୍ୟ-କାଳୀନ ଓଡ଼ିଆ ଚଉତିଶା ସାହିତ୍ୟ ଅତୀବ ସମୃଦ୍ଧ । ଏହି ସଂକଳନସ୍ଥ ଚଉତିଶାମାନଙ୍କରୁ ପାଠକମାନେ ତାହା ପାଇ ପାରିବେ ବୋଲି ମୋର ବିଶ୍ୱାସ । ଓଡ଼ିଆ ଚଉତିଶାର ପ୍ରାଚୀନତା, କ୍ରମବିକାଶର ଇତିବୃତ୍ତ, ପ୍ରକାରଭେଦ, ରଚନାରୀତି ଓ ବିବିଧ ପ୍ରୟୋଗ ବିଧି ସମ୍ପର୍କରେ 'ଓଡ଼ିଆ ଗୀତ କାବ୍ୟ' ପୁସ୍ତକରେ ବିସ୍ତୃତ ଆଲୋଚନା କରାଯାଇଥିବାରୁ ଏଠାରେ ତାହାର ପୁନରାବୃତ୍ତି ଅନାବଶ୍ୟକ ବୋଧ କରୁଛି ।

ଏହି ଚଉତିଶା ଗୁଡ଼ିକ ଯେଉଁଠାରୁ ସଂଗୃହୀତ ତାହା ଏହି ସଂକଳନର ଶେଷ ଭାଗରେ 'କବି ପରିଚୟ' ପ୍ରସଙ୍ଗରେ ଉଲ୍ଲିଖିତ । ଚଉତିଶା ଗୁଡ଼ିକ ରଚୟିତାଙ୍କ ନାମର ବର୍ଣ୍ଣମାଳାନୁକ୍ରମେ ସଜ୍ଜିତ ହୋଇଅଛି । ଷୋଡ଼ଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ମଧ୍ୟରେ ହିଁ ଏହି ଚଉତିଶା ଗୁଡ଼ିକ ରଚିତ ହୋଇଥିଲା । ବିଗତ ପାଞ୍ଚଶହ ବର୍ଷ ଧରି ଏହି କାବ୍ୟ ରୂପ ଜନପ୍ରିୟତା ଲାଭ କରିଥିଲା ଓ ଓଡ଼ିଶାର ସର୍ବାଞ୍ଚଳର କବି କିପରି ଏହି କାବ୍ୟ ରୂପ ମାଧ୍ୟମରେ ସେମାନଙ୍କ ବିବିଧ ଭାବନାକୁ ରୂପଦାନ କରିଛନ୍ତି ତାହା ଏହି ସଂକଳନସ୍ଥ ଚଉତିଶା ଗୁଡ଼ିକରୁ ସହଜରେ ଅବଧାରଣା କରାଯାଇପାରିବ ।

ଅତୀତରେ ୬ ଗୋବିନ୍ଦ ରଥଙ୍କ ଉଦ୍ୟମ ଯୋଗୁ 'ଚଉତିଶା ଭୂଷଣ' (୧ମ ଓ ୨ୟ ଭାଗ) ଓ ପ୍ର.ବୀ ସମିତି ପକ୍ଷରୁ 'ଚଉତିଶା ମଧୁଚକ୍ର' ନାମରେ ୬ ଖଣ୍ଡରେ ବିଭକ୍ତ ସଂକଳନ ଗ୍ରନ୍ଥମାନଙ୍କରେ ପ୍ରାୟ ୭୫ଟି ଚଉତିଶା ଲୋକ ଲୋଚନକୁ ଆସିପାରିଥିଲା । କ୍ଷୁଦ୍ର ପୁସ୍ତିକା ଆକାରରେ ସ୍ୱତନ୍ତ୍ରଭାବେ ବହୁ ଚଉତିଶା ମଧ୍ୟ ମୁଦ୍ରିତ ହୋଇଅଛି । ମହିମା ଧର୍ମୀ ଭକ୍ତକବିମାନଙ୍କର କେତେକ ଚଉତିଶାର ଏକ ସଂକଳନ 'ଚଉତିଶା କବିତା' ମଧ୍ୟ ପ୍ରକାଶ ପାଇଛି । ଏତଦ୍‌ବ୍ୟତୀତ ବହୁ ଚଉତିଶା ଏ ପର୍ଯ୍ୟନ୍ତ ପୋଥିରୁ ଉଦ୍ଧାର କରି ପ୍ରକାଶ କରିବାର ଉଦ୍ୟମ ହୋଇ ପାରିନାହିଁ । ଏଗୁଡ଼ିକ ସଂଗୃହୀତ ହୋଇ ପ୍ରକାଶିତ ହେଲେ ଓଡ଼ିଶାର ବହୁ ଲୁପ୍ତ ରତ୍ନର ଯେ ପୁନରୁଦ୍ଧାର ହୋଇପାରିବ ଏହା ସୁନିଶ୍ଚିତ । ଓଡ଼ିଶାର ପ୍ରାଚୀନ କବି ଓ ସେମାନଙ୍କ ସୃଷ୍ଟି ସଂଭାର ସଂପର୍କରେ ଏହା ନୂତନ ଆଲୋକ ସଂପାତ କରିବାକୁ ସମର୍ଥ ହେବ ।

ପୋଥିରୁ ଏ ଗୁଡ଼ିକୁ ସଂଗ୍ରହ କରିବା ଓ ତାହାର ଶୁଦ୍ଧପାଠ ନିର୍ଣ୍ଣୟ କରିବା ଯେ ଏକ ଆୟାସସାଧ୍ୟ ବିଷୟ ଏହା ଲେଖିବା ଅନାବଶ୍ୟକ । ସଂଗୃହୀତ କେତେକ ଚଉତିଶାର ନାମ ଉଲ୍ଲିଖିତ ନଥିବାରୁ ସେମାନଙ୍କର ନାମକରଣ ମଧ୍ୟ କରାଯାଇଅଛି ।

ଏହି ସଂକଳନସ୍ଥ ଚଉତିଶାମାନଙ୍କରୁ ତାହାର ପ୍ରକାରଭେଦ ତଥା ବିଷୟ ବସ୍ତୁର ବୈଚିତ୍ର୍ୟ ଅନୁମେୟ । ଏଥିରେ ଭକ୍ତିମୂଳକ, ପ୍ରୀତିମୂଳକ, ପୌରାଣିକ, ତତ୍ତ୍ୱ ପ୍ରଧାନ ଓ ବିବିଧ ଏହିପରି ପଞ୍ଚବିଧ ଚଉତିଶା ସନ୍ନିବିଷ୍ଟ । ଭକ୍ତିମୂଳକ ଚଉତିଶା ଭାବରେ ରାମ କୃଷ୍ଣ ହରି (ଅଜ୍ଞାତ), ଦୀନଜନ କରୋଣ (ଅଭିମନ୍ୟୁ), ଶିବ ଆରତୋଷଣ (କପିଳେଶ୍ୱର), ବାଲୁଙ୍କେଶ୍ୱର (କୃତ୍ତିବାସ), ହରିନାମ କୀର୍ତ୍ତନ (ଗୌରଚରଣ), ଜୀବନ ଚଉତିଶା (ଚତୁର୍ଭୁଜ), ଭବାନୀ ଚଉତିଶା (ଭୁବନେଶ୍ୱର) ପ୍ରଭୃତି ଚଉତିଶାଗୁଡ଼ିକ ଉଲ୍ଲେଖଯୋଗ୍ୟ । ଏଥିରୁ ଆଦ୍ୟାଶକ୍ତି ଭବାନୀ, ଶିବ, ବିଷ୍ଣୁ ପ୍ରଭୃତିଙ୍କ ସଗୁଣ ଉପାସନାରେ ଭକ୍ତକବି କିପରି ତନ୍ମୟ ଥିଲେ ତାହା କଳନା କରାଯାଇପାରେ ।

ସେହିପରି ତତ୍ତ୍ୱପ୍ରଧାନ ଚଉତିଶା ଗୁଡ଼ିକରେ ନିର୍ଗୁଣ ଉପାସନାର ନିଦର୍ଶନ ଦେଖିବାକୁ ମିଳେ । ପିଣ୍ଡରେ ଆଶା କରି, ଅଲେଖ ବ୍ରହ୍ମାଙ୍କର ଉପଲବ୍ଧିହିଁ ଏହି ସବୁ ଚଉତିଶାର ମୂଳକଥା । ଏହି ବିଚିତ୍ର ଆଧ୍ୟାତ୍ମିକ ଉପଲବ୍ଧିକୁ ଭକ୍ତକବିଗଣ ବିଭିନ୍ନ ଶରୀର ଭେଦ ଚଉତିଶା ମାଧ୍ୟମରେ ପ୍ରକାଶ କରିଯାଇଅଛନ୍ତି । ଏଥିରେ ଅଚ୍ୟୁତାନନ୍ଦ, ଦ୍ୱାରକା ଦାସ, ରାମ ଦାସ, ବଲ୍ଲଭ ଦାସ ପ୍ରଭୃତିଙ୍କ ଗୋଟିଏ ଗୋଟି ଶରୀରଭେଦ ଚଉତିଶା ସନ୍ନିବିଷ୍ଟ । ସୁଦର୍ଶନଙ୍କ ଅଲେଖମହିମା ଚଉତିଶା, ଅଜ୍ଞାତକାରର ଓଲଟ ଚଉତିଶାରେ ଓ ଯୋଗୀନ୍ଦ୍ର ଦାଣ୍ଡଧୂଆ (ଭଗବାନ), ମିତଣୀ ଦାଣ୍ଡଧୂଆ (କୃଷ୍ଣ ଦାସ)ରେ ମଧ୍ୟ ସେହି ନିର୍ଗୁଣ ବ୍ରହ୍ମ ଦର୍ଶନ ତତ୍ତ୍ୱ ନିହିତ । ଭକ୍ତକବି ଅଚ୍ୟୁତାନନ୍ଦ ମନକୁ 'ଠୁଳ ଶୂନ୍ୟ' ଉପରେ କିପରି ଜଗନ୍ନାଥ ମହାପ୍ରଭୁ 'ନିତ୍ୟ କିଶୋର ରାଧିକାଙ୍କ' ସହ 'ରାହାସ' କରୁଛନ୍ତି ତାହା ପ୍ରତ୍ୟକ୍ଷ କରିବାକୁ ଆହ୍ୱାନ କରିଅଛନ୍ତି । କବିଙ୍କ ଭାଷାରେ—

'ନାଦରେ ବନ୍ଦୁକୁ ଯେବେ ପାଶରୁ ମିଶାଇ
ଛନ୍ନମୂର୍ତ୍ତି ଏକ ବନ୍ଧୁ ଦେଖିବୁ ସେଠାଇ ।'

ଏହି ଚଉତିଶାଗୁଡ଼ିକ ଯେ ରହସ୍ୟମୟ ଏହା କହିବା ଅନାବଶ୍ୟକ ।

ପୌରାଣିକ ଚଉତିଶା ଗୁଡ଼ିକ ଗୋପୀ ଓ ରାଧାଙ୍କ ବିରହ, ରାମଚନ୍ଦ୍ରଙ୍କ ସୀତା ବିଚ୍ଛେଦ ଜନିତ ଦୁଃଖ, ରାବଣର ଅପହରଣ ଯୋଗୁଁ ବୈଦେହୀଙ୍କ କାରୁଣ୍ୟ ପ୍ରଭୃତି ପୌରାଣିକ ପ୍ରସଙ୍ଗକୁ ଉପଜୀବ୍ୟ କରି ରଚିତ । କରୁଣାକରଙ୍କ କାନନର ଚଉତିଶା, କାଶୀନାଥ କରଙ୍କ ସଜନୀ ଚଉତିଶା, କିଶୋର ଦାସଙ୍କ ବୈଦେହୀ ଚଉତିଶା, କୃଷ୍ଣ କରଙ୍କ ଉଦ୍ଧବ ଚଉତିଶା, ପାର୍ବତୀ ବୈଷ୍ଣବୀଙ୍କ ରାଧା ବିରହ ଚଉତିଶା, ଲୋକନାଥ ଦାସଙ୍କ ଜାନକୀ ସ୍ମରଣ ଚଉତିଶା, ଶ୍ୟାମଘନଙ୍କ ମେଘଯୁଦ୍ଧ ଚଉତିଶା ପ୍ରଭୃତି ତାହାର ନିଦର୍ଶନ ।

ପ୍ରୀତିମୂଳକ ଚଉତିଶାଗୁଡ଼ିକୁ ଲୌକିକ ବା ମାନବିକ ଓ ପୌରାଣିକ ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ବଳଭଦ୍ର ଭଂଜଙ୍କ ଜଳଧର ଚଉତିଶା, ବ୍ରଜରାଜ ସିଂହଙ୍କ ବଳାହକ ଚଉତିଶା, ବିଷ୍ଣୁଦାସଙ୍କ ପ୍ରବେଶ ଚଉତିଶା, ରଘୁନାଥ ହରିଚନ୍ଦନଙ୍କ ଚନ୍ଦ୍ରମୁଖୀ ଚଉତିଶା, ଶ୍ରୀଧରଙ୍କ ନବଘନ ଚଉତିଶାରେ 'କେବଣ ନାୟକ' ବା 'କେଉଁ ବିରହୀ' ଅଥବା 'କାନ୍ତା ଚିନ୍ତା ମଗ୍ନ ଜନ'ର ବିରହ ଅନୁଭୂତି ହିଁ ଚର୍ଚ୍ଚିତ ହୋଇଅଛି । ବର୍ଷା ବିରହ, ମୋହିନୀ, ଚଇତ, ସୁନ୍ଦରୀ ଓ ମେଘଯୁଦ୍ଧ ପ୍ରଭୃତି ଚଉତିଶାରେ କୃଷ୍ଣଙ୍କୁ କେବଳ ଉପଲକ୍ଷ ଭାବରେ ଗ୍ରହଣ କରାଯାଇଥିଲେ ହେଁ ଏଗୁଡ଼ିକରେ ସେହି ବିରହାନୁଭୂତି ଅଥବା ସ୍ମୃତି ହିଁ ବର୍ଣ୍ଣିତ ହୋଇଅଛି ।

ଏହି ପ୍ରୀତିମୂଳକ ଚଉତିଶା ଗୁଡ଼ିକ ମୁଖ୍ୟତଃ ରୀତିକାଳୀନ ରଚନା । ଏଣୁ ଭକ୍ତି-ମୂଳକ ଚଉତିଶା ଅପେକ୍ଷା ଏହି ଚଉତିଶା ଗୁଡ଼ିକରେ ଆଲଙ୍କାରିକତାର ଆଧିକ୍ୟ ଦେଖିବାକୁ ମିଳିଥାଏ । ବଳଭଦ୍ରଙ୍କ ଜଳଧର ଚଉତିଶା ଓଡ଼ିଆ ସାହିତ୍ୟରେ ତଥା ଚଉତିଶା ରଚନା କ୍ଷେତ୍ରରେ ଏକ ଅତୁଳନୀୟ ସୃଷ୍ଟି । ଏପରି ଆଲଙ୍କାରିକ କାରୁକାର୍ଯ୍ୟ ଓଡ଼ିଆ ଗୀତିକାବ୍ୟ ସାହିତ୍ୟରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ସମସ୍ତ ଚଉତିଶାଟି ଆଦ୍ୟ, ମଧ୍ୟ ଓ ପ୍ରାନ୍ତରେ ଶୃଙ୍ଖଳା ଅଳଙ୍କାର ସଂଯୋଜିତ । ତହିଁରୁ କବିଙ୍କ ଅପୂର୍ବ ଶବ୍ଦ ପାଣ୍ଡିତ୍ୟର ପରିଚୟ ମଧ୍ୟ ମିଳିଥାଏ । ଗୋଟିଏ ପଦ ଦେଖନ୍ତୁ—

'କାନ୍ତା ଚିନ୍ତା ମଗ୍ନ ଜନ          ଜନ ସଘନ ଘନ
ଦେଖି ଦୁଃଖିତ ଦର୍ପଣରେ
କରେ ତାହାକୁ ସ୍ତବ          ବ୍ୟସ୍ତେ ବ୍ୟଗ୍ର ସ୍ୱଭାବ
ଭାବ ଅସହ କାର୍ମୁକରେ
ହେ ଜଳଧର
କରେ ବିନୟେ ଯୋଡ଼େ କର,          କରି ଶ୍ରୋତ୍ରକୁ ଦୟାକର
କରମରୁ ମୋହର,          ହରନ୍ତୁନା ଅନ୍ତର
ତରସ୍ତ ନକରିବ ଝର ହେ । ୧ ।

ସେହିପରି ଶ୍ରୀଧରଙ୍କ 'ନବଘନ ଚଉତିଶା'ରେ ମଧ୍ୟ ଯମକର ଚମତ୍କାର ସଂଯୋଜନା ଦେଖିବାକୁ ମିଳେ । ଯଥା—

'କହିବ ଯାଉଛ- ଗଢକ ଗଢକ
କର ଧୀରେ ନବଘନ
କଲେ ଅନୁଗ୍ରହ ଜଗତେ ଜଗତେ
ତାହାଙ୍କୁ ବୋଲନ୍ତି ଧନ୍ୟ
ଝର ଶ୍ୱାସ ତେଜ ରମଣୀ ରମଣୀ
ରଜନୀ କରରେ ଶୋଇ
ଖଣ୍ଡ ପର୍ଣ୍ଣନାମ ଭୁଷିବ ଭୁଷିବ
ସୁଜନତ କରିବ ନାହିଁ ।'

ଅଧିକାଂଶ ପ୍ରଣୟପ୍ରଧାନ ଚଉତିଶାର ମୂଳ ପ୍ରେରଣାର ଉତ୍ସ ଯେ କାଳିଦାସଙ୍କ ମେଘଦୂତ ଏହା କହିବା ଅନାବଶ୍ୟକ । ପ୍ରଣୟିନୀ ନିକଟକୁ ମେଘକୁ ଦୂତ ଭାବେ ନିୟୋଜିତ କରି ଓଡ଼ିଶାର ବହୁ କବି ଚଉତିଶା ରଚନା କରିଯାଇଥିଛନ୍ତି । ବଳଭଦ୍ର ଭଞ୍ଜଙ୍କ ଜଳଧର ଚଉତିଶା, ବ୍ରଜରାଜସିଂହଙ୍କ ବଳାହକ ଚଉତିଶା, ଶ୍ରୀଧରଙ୍କ ନବଘନ ଚଉତିଶାରେ ଏହା ସୁସ୍ପଷ୍ଟ । 'ବଳାହକ ଚଉତିଶା'ରେ ମେଘ ବିଦେଶୀ ନାୟକର ଦୂତ ଭାବେ ନିୟୋଜିତ । ବିଦେଶୀ ନାୟକ ଅତୀତର ପ୍ରଣୟ ସ୍ମୃତି ସ୍ମରଣ କରି ବିରହ ଅନୁତାପାରେ କିପରି ଜର୍ଜରିତ ହୋଇଅଛି ତାହାହିଁ ଏଥିରେ ବର୍ଣ୍ଣିତ ।

ପ୍ରଣୟପ୍ରଧାନ ଚଉତିଶାମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବବର୍ତ୍ତୀ କବି ବିଷ୍ଣୁଦାସଙ୍କ ଚଉତିଶା ପ୍ରାଚୀନତମ ମନେହୁଏ ।

ବିବିଧ ପର୍ଯ୍ୟାୟଭୁକ୍ତ ଚଉତିଶାମାନଙ୍କ ମଧ୍ୟରେ ଭଲମନ୍ଦ ଚଉତିଶା (ନିଧିରଥ), ଠଗ ରହୁ (ଭୁବନେଶ୍ୱର କବିଚନ୍ଦ୍ର), ପଦ୍ମଳି ଚଉତିଶା (ଦନେଇ ଦାସ) ଉଲ୍ଲେଖ-ଯୋଗ୍ୟ ।

ଶିକ୍ଷାପ୍ରଦ, ଆଚରଣୀୟ ଓ ଅନାଚରଣୀୟ ବିଷୟର ଉଲ୍ଲେଖ ଏବଂ ପରିହାସ ଓ ବ୍ୟଙ୍ଗ ସୃଷ୍ଟି ହିଁ ଏହି ଚଉତିଶା ରଚନାର ଉଦ୍ଦେଶ୍ୟ ମନେହୁଏ ।

ପ୍ରାଚୀନ ଓ ମଧ୍ୟଯୁଗର କବିମାନେ ଚଉତିଶା ରଚନା କ୍ଷେତ୍ରରେ କିପରି ବିବିଧ ବୈଚିତ୍ର୍ୟ ଓ ପ୍ରୟୋଗ କୁଶଳତା ପ୍ରଦର୍ଶନ କରିଥିଲେ ତାହାହିଁ ବିସ୍ମରଣୀୟ । ଚଉତିଶାରେ ଚଉତିରିଶି ଗୋଟି ବ୍ୟଞ୍ଜନବର୍ଣ୍ଣ ପର୍ଯ୍ୟାୟକ୍ରମେ ବ୍ୟବହୃତ ହେଉଥିଲେ ହେଁ ଏହାର ପଦ ବା ପାଦ ସଂଖ୍ୟାରେ ସମତା ପରିଲକ୍ଷିତ ହୁଏ ନାହିଁ । କାରଣ ବିଭିନ୍ନ ଛନ୍ଦ ବୃତ୍ତରେ ଚଉତିଶା ରଚିତ ହେଉଥିବା ଯୋଗୁଁ ଓ ଅକ୍ଷରାଦି ଶବ୍ଦ ବିନ୍ୟାସରେ କବିମାନେ ବିଭିନ୍ନ ରୀତି ଅନୁସରଣ କରୁଥିବାରୁ ଚଉତିଶାର ମୋଟ ପଦ ସଂଖ୍ୟାରେ ବିଭିନ୍ନତା ସୃଷ୍ଟି ହେବା ଏକାନ୍ତ ସ୍ୱାଭାବିକ ।

କେତେକ ଚଉତିଶାରେ ପ୍ରତ୍ୟେକ ପାଦରେ ଓଡ଼ିଆ ବ୍ୟଞ୍ଜନବର୍ଣ୍ଣମାନଙ୍କ ମଧ୍ୟରୁ ଏକାଧିକ ବ୍ୟଞ୍ଜନବର୍ଣ୍ଣାଦ୍ୟ ଶବ୍ଦର କ୍ରମିକ ବିନ୍ୟାସ ହୋଇଥାଏ । ଏହା ଚଉତିଶା ରୀତିର ଯେ ଏକ ବିଚିତ୍ର ପ୍ରୟୋଗ କହିବା ଅନାବଶ୍ୟକ ।

ଏହି ରୀତିରେ କବି ବନମାଳି ଓଡ଼ିଆରେ ସବୁଠାରୁ ଏକ କ୍ଷୁଦ୍ରତମ ଚଉତିଶା ମାତ୍ର ୨ଟି ପଦରେ ରଚନା କରିଅଛନ୍ତି । ଯଥା—

'କଳାବତୀ ଖଞ୍ଜନାକ୍ଷୀ ଗୁରୁ ନିତମ୍ବିନୀ
ଘନକେଶୀ ଙରଃଶୋଣୀ ଚମ୍ପକ ବରଣୀ
ଛନ୍ଦ-ପଠିଣୀରେ । ୧ ।

× × ×

ହ୍ରାସ ମଞ୍ଜୁଳା ହୃଦୟ ତାପ ଧ୍ୱଂସକରୀ
କ୍ଷଣଦା କାନ୍ତ ରୂ ବନମାଳୀ ଦନସାରୀ
କ୍ଷମାନଧାମୀରେ । ୨ ।
(ବନମାଳୀ ପଦ୍ୟାବଳୀ-ପୃ ୧୭୩)

ଶଂସିତ ସଂକଳନସ୍ଥ ଅଚ୍ୟୁତାନନ୍ଦଙ୍କ ପିଣ୍ଡବ୍ରହ୍ମାଣ୍ଡ ଚଉତିଶା ତାଦୃଶ ରୀତିର ଏକ ନିଦର୍ଶନ ।

'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣମାଳାର ଶବ୍ଦରୁ ବିଲୋମ ବା ବିପରୀତ କ୍ରମରେ ଚରଣର ଆଦ୍ୟରେ ବିନ୍ୟାସ କରି ମଧ୍ୟ ଚଉତିଶା ରଚିତ ହୋଇଅଛି । ଏହା ଓଲଟ ଚଉତିଶା ବା ବିପରୀତ ଚଉତିଶା ନାମରେ ଖ୍ୟାତ । ଏହି ସଂକଳନସ୍ଥ ସୁଦର୍ଶନଙ୍କ 'ଅଣାକାର ଓଲଟ ଚଉତିଶା' ତାହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ବର୍ଣ୍ଣମାଳାର ପ୍ରଥମ ବର୍ଣ୍ଣ 'କ' ପରେ ଶେଷ ବର୍ଣ୍ଣ 'କ୍ଷ', ତାପରେ ଦ୍ୱିତୀୟ ବର୍ଣ୍ଣ 'ଖ' ଓ ତାପରେ ୩୩ଶ ସଂଖ୍ୟକ ବର୍ଣ୍ଣ 'ହ'—ଏହିପରି କ୍ରମରେ ପ୍ରତି ଚରଣର ଆଦ୍ୟରେ ବର୍ଣ୍ଣବିନ୍ୟାସ ରୀତି ଅନୁସରଣକରି ଚଉତିଶା ରଚିତ ହେଲେ ତାହା 'ମେଷଯୁଦ୍ଧ ଚଉତିଶା' ନାମରେ ପରିଚିତ । ଏହି ସଂକଳନସ୍ଥ ଶ୍ୟାମଘନଙ୍କ ଚଉତିଶାଟି ତାହାର ପ୍ରକୃଷ୍ଟ ନିଦର୍ଶନ ।

ଚଉତିଶାର ଭଣିତାରେ ମଧ୍ୟ କେତେକ ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳେ । କେବଳ ଶେଷ ପଦରେ କବି ତାହାଙ୍କ ନାମୋଲ୍ଲେଖ ନକରି ପ୍ରତ୍ୟେକ ପଦରେ ମଧ୍ୟ ତାହାଙ୍କ ନାମର ବ୍ୟବହାର କରିଛନ୍ତି । ଉଦାହରଣ ସ୍ୱରୂପ ଏହି ସଂକଳନସ୍ଥ ଦୀନେଇ ଦାସଙ୍କ 'ପଦ୍ମଳ ଚଉତିଶା'ର ନାମ ଉଲ୍ଲେଖଯୋଗ୍ୟ । ସେହିପରି ଚଉତିଶାର ଶେଷ ପଦ ଛଡ଼ା ୧୨ଶ ଓ ୨୪ଶ ପଦରେ ମଧ୍ୟ ରଚୟିତାଙ୍କ ନାମର ବ୍ୟବହାର ମଧ୍ୟ ଏକ ପ୍ରାଚୀନ ରୀତି ଥିଲା ।

ଉପେନ୍ଦ୍ର ଭଞ୍ଜଙ୍କ 'ସ୍ୱଭାବ ଚଉତିଶା' ଓ ଏହି ସଂକଳନସ୍ଥ ବଳାନନ୍ଦ ଚଉତିଶା (ବ୍ରଜରାଜସିଂହ), ମିଛଣୀ ଦାଣ୍ଡଧୁଆ (କୃଷ୍ଣ ଦାସ), ଭବାନୀ ଚଉତିଶା (ଭୁବନେଶ୍ୱର) ଓ ଯୋଗେନ୍ଦ୍ର ଦାଣ୍ଡଧୁଆରେ ଏହି ରୀତି ଅନୁସୃତ ହୋଇ ଚଉତିଶାର ତିନିଗୋଟି ପର୍ଯ୍ୟାୟ ସ୍ୱୀକୃତ ହୋଇଅଛି ।

ଚଉତିଶାର ରଚନାଶୈଳୀ, ବିବିଧ ପ୍ରୟୋଗ ବିଧି ସଂପର୍କରେ 'ଓଡ଼ିଆ ଗୀତି କାବ୍ୟ'ରେ ଚଉଦ ଗୋଟି ବିଭାଗ ଦର୍ଶାଇ ଦିଆଯାଇଅଛି । (ପୃ ୧୫୮-୧୬୩) । ଏଣୁ ଏଠାରେ ତାହାର ବିଶଦ ବର୍ଣ୍ଣନା ଅନାବଶ୍ୟକ ବୋଧକରୁଛି ।

ଲୋକଗୀତର ଛନ୍ଦ, ଭାଗବତ ପ୍ରଭୃତିରୁ ଆରମ୍ଭ କରି ଦେଶାଖୀ, ବଙ୍ଗଳାଶ୍ରୀ ପ୍ରଭୃତି କାବ୍ୟ ପ୍ରଚଳିତ ଛନ୍ଦରେ କିପରି ବିଭିନ୍ନ କବି ଚଉତିଶା ରଚନାରେ ମନୋନିବେଶ କରିଛନ୍ତି ତାହା ଏହି ସଂକଳନସ୍ଥ ଚଉତିଶା ଗୁଡ଼ିକରୁ ସୁସ୍ପଷ୍ଟ ରୂପେ ଜଣାଯାଏ ।

ପ୍ରାଚୀନ ଗୀତି କାବ୍ୟର ବିଭିନ୍ନ ରୂପଭେଦ ମଧ୍ୟରେ ଚଉତିଶା ହିଁ ଥିଲା ସର୍ବାଧିକ ଜନପ୍ରିୟ ଓ ପ୍ରତିଷ୍ଠା ସଂପନ୍ନ । ଜନସାଧାରଣଙ୍କ ନିକଟରେ ଏହା ସୁପରିଚିତ ଓ ସୁସମାଦୃତ ହେଉଥିବାରୁ ସମ୍ଭବତଃ ପ୍ରାଚୀନ କବିମାନେ ସେମାନଙ୍କ କାବ୍ୟର ବିଭିନ୍ନ ଛାନ୍ଦକୁ କେତେକ ଜନପ୍ରିୟ ଚଉତିଶା ବୃତ୍ତରେ ଗାଇବା ପାଇଁ ନିର୍ଦ୍ଦେଶ ଦେଇଥିବା ଦେଖାଯାଏ । ସୁରଯୋଗ୍ୟତା, ଦେବ ବନ୍ଦନା, ଆଳଂକାରିକ କାରୁକାର୍ଯ୍ୟ ପ୍ରଦର୍ଶନ ଓ ବର୍ଣ୍ଣଶିକ୍ଷା ପକ୍ଷେ ଏହାର ଅନୁକୂଳତା ତଥା ଉପଯୋଗିତା ଓ ସଂଗୀତମୟତା ଯୋଗୁଁ ଅତୀତରେ ଏହା ଅଧିକତର ଜନପ୍ରିୟ ଥିଲା । ମାତ୍ର ନବଯୁଗର ପ୍ରାରମ୍ଭରେ ମୁଦ୍ରଣ ଯନ୍ତ୍ରର ପ୍ରତିଷ୍ଠା ଫଳରେ କ୍ରମେ ସଙ୍ଗୀତ ଓ କବିତାର ପରିସର ପୃଥକ ହୋଇଗଲା । ପାଶ୍ଚାତ୍ୟ ଗୀତି କାବ୍ୟ ରୂପର ପ୍ରୟୋଗ, କବିତାରେ ନୂତନ ଭାବନା ଓ ବିଷୟବସ୍ତୁର ବିନିଯୋଗ ପ୍ରଭୃତି ଫଳରେ ପାଞ୍ଚଶହ ବର୍ଷଧରି ଜନପ୍ରିୟ ଥିବା ଏହି କାବ୍ୟରୂପଟି ସଂପୂର୍ଣ୍ଣ ଅବହେଳିତ ଓ ଅପ୍ରଯୁକ୍ତ ହୋଇପଡ଼ିଛି । ଚଳିତ ଶତାବ୍ଦୀରେ ଗୋବିନ୍ଦ ରଥ, ପ୍ରାଚୀ ସମିତି ପ୍ରଭୃତିଙ୍କ ପ୍ରଚେଷ୍ଟାରେ କେତେକ ଚଉତିଶା ସଂକଳନ ପ୍ରକାଶିତ ହୋଇଥିଲେ ହେଁ ବହୁ ଚଉତିଶା ଅଦ୍ୟାପି ଅପ୍ରକାଶିତ ରହିଛି ।

ପ୍ରାଚୀନ ଓ ମଧ୍ୟକାଳୀନ ସୃଷ୍ଟି ସଂପଦର ବୈଶିଷ୍ଟ୍ୟ ବସ୍ତୁଦୃଷ୍ଟିରୁ ଏ ଗୁଡ଼ିକର ସଂଗ୍ରହ, ସଂରକ୍ଷଣ ଓ ଅନୁଶୀଳନ ଯେ ଏକାନ୍ତ କାମ୍ୟ ଏହା କହିବା ଅନାବଶ୍ୟକ ।

**ଜାନକୀବଲ୍ଲଭ ମହାନ୍ତି**

ଲେଖକ : ଅଜ୍ଞାତ

# କୃଷ୍ଣ ରାମ ହରି ଚଉତିଶା

( ୧ )

କୃଷ୍ଣ ଗୋବିନ୍ଦ ଗୋପାଳ ନରହରି
କଂଜଲୋଚନ ମାଧବ ଦଇତାରି
କମଳାକାନ୍ତ କେଶବ କମ୍ବୁଧାରୀ
ପ୍ରଣମାମି ସଦା ରାମ କୃଷ୍ଣ ହରି ।

( ୨ )

ଖୋଜି ନ ପାନ୍ତି ଶୁକ ସୌନକ ମୁନି
ଖେଳ ବନେ ଗୋପସୁତ ବତ୍ସା ଘେନି
ଖେଳ ରଙ୍ଗେ କଂସ ଅଷ୍ଟ ମଲ୍ଲ ମାରି
ପ୍ରଣମାମି ସଦା କୃଷ୍ଣ ରାମ ହରି ।

( ୩ )

ଗୋରଚନା ଚିତା ନାସେ ସିନ୍ଧୁ ଫୁଲ
ଗୁଂଜ ଅବତଂସ ଶିରେ ରଙ୍ଗେ (୧) ମାଳ
ଗଳେ ବ୍ୟାଘ୍ରନଖ ସଙ୍ଗେ ହେମମାଳୀ
ପ୍ରଣମାମି ସଦା କୃଷ୍ଣ ରାମ ହରି ।

( ୪ )

ଘନ ପୁଂଜ ଇନ୍ଦ୍ର ନୀଳମଣି ତନୁ
ଘଞ୍ଚ ଭ୍ରୂଲତା କି କାମଦେବ ଧନୁ
ଘଟଣ ଅଳକାପନ୍ତି ମତ୍ତ ଅଳି
ପ୍ରଣମାମି ସଦା କୃଷ୍ଣ ରାମ ହରି ।

---

ପାଠାନ୍ତର (୧) ରୁଞ୍ଜ

( ୫ )

ନୀଳ କୁଞ୍ଚିତ କେଶେ ମାଳତୀ ଗନ୍ଧ
ନୀଳକଣ୍ଠ ଚନ୍ଦ୍ରିକା ଚୂଳରେ ଶୋଭ
ନବକିଶୋର ଗୋକୁଳେ ଅବତର
ପ୍ରଣମାମି ସଦା କୃଷ୍ଣ ରାମ ହର ।

( ୬ )

ଚନ୍ଦ୍ର କୋଟି ଜିଣି ଶ୍ରୀମୁଖମଣ୍ଡଳ
ସ୍ୱରୂ କର୍ଣ୍ଣେ ଶୋହେ ମକରକୁଣ୍ଡଳ
ସ୍ୱଚ୍ଛ ଗଣ୍ଡସ୍ଥଳେ ଦର୍ପଣର ଝଳ
ପ୍ରଣମାମି ସଦା କୃଷ୍ଣ ରାମ ହର ।

( ୭ )

କ୍ଷୀର ଉଦଧି ଶୟନେ ଭକ୍ତବନ୍ଧୁ
କ୍ଷମା ଗୁଣ ନିଧାନ କରୁଣାସିନ୍ଧୁ
କ୍ଷୀରସିନ୍ଧୁସୁତା ଯାର ପରିବ୍ରସ୍ତ (୧)
ପ୍ରଣମାମି ସଦା କୃଷ୍ଣ ରାମ ହର ।

( ୮ )

ଯେଉଁ ପାଦପଦ୍ମେ ଲକ୍ଷ ଚନ୍ଦ୍ର ଜ୍ୟୋତି (୨)
ଯହିଁ ଜାତ (୩) ବେଦବର ପଦ୍ମପତ୍ର
ଯାର (୪) ପ୍ରକୃତିରୁ କୋଟି ବସୁନ୍ଧରା
ପ୍ରଣମାମି ସଦା ରାମ କୃଷ୍ଣ ହର ।

( ୯ )

ଝଲମଲ ଉରେ କଉସ୍ତୁଭମଣି
ଝିନ ପୀତବାସ କଟିରେ କିଙ୍କିଣୀ
ଝାଡ଼ କୁସୁମମାଳ ଭୂଷଣ କରି
ପ୍ରଣମାମି ସଦା ରାମ କୃଷ୍ଣ ହର ।

---

(୧) ପରିବାସ୍ତ । (୨) ଯେଉଁ ପାଦପଦ୍ମ ଲକ୍ଷେଚନ୍ଦ୍ର ଜ୍ୟୋତି ।
(୩) ଜାତ ବସ୍ତ୍ର । (୪) ଯେଉଁ ।

( ୧୦ )

ଣାମ ଯନ୍ତ୍ରମନ୍ତ୍ର ତନ୍ତ୍ର ପତ୍ୟପର
ଣୋହେ ନିର୍ଗୁଣ ସଗୁଣ ପରାପର (୧)
ଣାମ ଅଶେଷ ବ୍ରହ୍ମାଣ୍ଡେ ଅଛୁ ପୂରି
ପ୍ରଣମାମି ସଦା କୃଷ୍ଣ ରାମ ହରି ।

( ୧୧ )

ଟାଳି ପୁରନ୍ଦରପୂଜା ଗିରି ତୋଳି
ଟାଣପଣେ ମତ୍ତ କଂସ ଦର୍ପ ଦଳି (୨)
ଟେକି ସାତଦିନ କରେ ଗିରି ଧରି
ପ୍ରଣମାମି ସଦା କୃଷ୍ଣ ରାମ ହରି ।

( ୧୨ )

ଠାବ କେ କରିପାରୁ ମନ୍ଦମାମେରୁ (୩)
ଠିକେ ଦୀନଜନ-ବାଞ୍ଛା-କଳ୍ପତରୁ
ଠିକେ ଦାମୋଦର ବିପ୍ର ଦୁଃଖହାରି
ପ୍ରଣମାମି ସଦା କୃଷ୍ଣ ରାମ ହରି ।

( ୧୩ )

ଡାକିଲେ ଦ୍ରୌପଦୀ  କୁରୁସଭାତଳେ
ଡରି ନାଶିଲ ବସନ ଦେଇ ହେଳେ
ଡାକି କୁବୁଜା ବାଙ୍କ ସଳଖ କରି
ପ୍ରଣମାମି ସଦା କୃଷ୍ଣ ରାମ ହରି ।

( ୧୪ )

ଢମପଣେ କାଳିନ୍ଦୀରେ ଘାଟ ସାଧି
ଢାଳେ ପାଲଟା ବସ୍ତ୍ର ବୃକ୍ଷରେ ବାନ୍ଧି
ଢୋକ କ୍ଷୀରରେ ପୂତନା ପ୍ରାଣ ହରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

---

(୧) ନିର୍ବିକଳ୍ପ ନିରଞ୍ଜନ ନିରାକାର
ଣୋହେ ଠୁଳ ଶୂନ୍ୟ ନାମ ଅଗୋଚର ।

(୨) ଟାଳି ପୁରନ୍ଦରପୂଜା ଗିରିବର
ଟାଣପଣେ ଶକ୍ର ଦର୍ପ କଲ ଚୂର ।

(୩) ଠାବ କେ କରିପାରିବ ମନ୍ଦାମେରୁ ।

(୧୫)

ଅମଳ କମଳ ନେତ୍ର ବିମ୍ବାଧର (୧)
ଆଦ୍ୟ ଅନ୍ତ ଅବସାନ ନାହିଁ ଯାର
ଅନ୍ଧ ଚକ୍ଷୁ ପାଇଲ ଦର୍ଶନ କରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୬)

ତନ୍ତ୍ର ତାରକ ମନ୍ତ୍ର ଯାହାର ନାମ
ତୁଟେ ସଂସାର-ସାଗର ମାୟା ଭ୍ରମ
ତ୍ରିବିକ୍ରମ ତିନ ପାଦେ ବଳି ଛଳି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୭)

ଠୂଳ ବିପରୀତ ରମ୍ଭା ଜାନୁ ଜଙ୍ଘ
ଥଳକମଳ ନିନ୍ଦିତ ପାଦଯୁଗ
ଥିଲୁ ପଦ୍ମପାଦ ମୋର ଶିରେ ଧରି (୨)
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୮)

ଦିନ ପ୍ରଳୟରେ ମାରକଣ୍ଡ ଯତି
ଦେଖି ଗର୍ଭେ ଠାବ ଦେଲେ ଶିଶୁପତି
ଦେଖିଲେ ଗର୍ଭେ ବ୍ରହ୍ମାଣ୍ଡ ଅଛୁ ପୂରି (୩)
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୯)

ଧ୍ୟାନେ ଗଜ ଚିନ୍ତିଲ ଅଖିଳନାଥ
ଧରି ଚକ୍ର ଛେଦିଲ ଗ୍ରାହର ମାଥ
ଧରି କୁମ୍ଭୀର ମାରି ଗଜ ଉଦ୍ଧାରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

---

(୧) ବିମ୍ବଫଳ ।
(୨) ସ୍ଥାଣୁ ପ୍ରମାଣୁ ଯୋଗୀ ଜାଗିଲେ ତରି ।
(୩) ଦେଖେ ଉଦରେ ଅଶେଷ ଅଛୁ ପୂରି ।

(୧୦)

ନୀଳ ଉତ୍ପଳ ଦଳ କଜ୍ଜ୍ୱଳ ଶୋଭେ
ନୀଳ ନଳୀନ ଲୋଚନ ଜନ ମୋହେ
ନୀଳା ନମନ୍ତେ ଅଶେଷ ରୂପ ଧରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୧)

ପରମାଣୁକେ ବ୍ରହ୍ମାଣ୍ଡ ରୋମମୂଳେ
ପଂଶୁ ଯେହ୍ନେ ଉଡ଼େ ଗବାକ୍ଷ ମାର୍ଗରେ (୧)
ପୂର୍ଣ୍ଣାନନ୍ଦ ବ୍ରହ୍ମ ମଞ୍ଚେ ଅବତରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୨)

ଫଣିଧର ବେଦବର ପୁରନ୍ଦର
ଫାଇ ସୁରାସୁର ଯକ୍ଷ ବିଦ୍ୟାଧର
ଫଣିରାଜ ଆଦ୍ୟ ପାଦେ ବଳି ଛଳି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୩)

ବନେ ଗୋପାଳଙ୍କ ସଙ୍ଗେ ବନଭୋଜି
ବ୍ରହ୍ମା ବତ୍ସାହରଣ ଛଳରେ ହେଜି
ବିଷ୍ଣୁରୂପେ ଗୋପେ ବତ୍ସା ଜାତ କରି (୨)
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୧୪)

ଭବଭୟ-ବିମୋଚନ ଭାବଗ୍ରାହୀ
ଭାରା ନିବାରଣ ଅର୍ଥେ ଜାତ ହୋଇ (୩)
ଭକ୍ତ ହିତେ ସୁଦର୍ଶନ କରେ (୪) ଧରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

---

(୧) ପଂଶୁ ଯେହ୍ନେ ଉଡ଼େ ଗବାକ୍ଷ ମାର୍ଗରେ ।
(୨) ବ୍ରହ୍ମାରୂପ ବତ୍ସାସୁତ । (୩) ମସ୍ତ । (୪) ଚକ୍ର ।

(୨୫)

ମତ୍ସ୍ୟ ବରାହରୂପେ ଦନ୍ତରେ (୧) ଧରି
ମହାବଳୀ ହିରଣାକ୍ଷ ବଳେ ମାରି (୨)
ମଧୁକୈଟଭ ମାରି ଗଜ (୩) ଉଦ୍ଧରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୨୬)

ଜପ ତୀର୍ଥ ବ୍ରତ ଶମ ଦମ ଦାନ (୪)
ଯୋଗ ସମାଧି ଯେ ପ୍ରାଣ ସଂଯମନ
ଜଗନ୍ନାଥ ନାମକୁ କେ ନୋହେ ସରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୨୭)

ରାମ ଅବତାରେ ଦଶରଥସୁତ
ରାଜ୍ୟ ତେଜି ବନେ ସଙ୍ଗେ ସୀତା ଭ୍ରାତ
ଋକ୍ଷ ବାନର ଘେନି ରାବଣ ମାରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୨୮)

ଲକ୍ଷି ନ ପାରି (୫) ଅଲକ୍ଷ ଗୁଣ (୬) ସୀମା
ଲକ୍ଷ ବଦନେ କହି ନ ପାରେ ବ୍ରହ୍ମା
ଲୀଳା ନିମନ୍ତେ ଚତୁର୍ବିଂଶ ମୂର୍ତ୍ତି (୭) ଧରି
ପ୍ରଣମାମି ସଦା ରାମ କୃଷ୍ଣ ହରି ।

(୨୯)

ବ୍ରଜକିଶୋର ବର କାଳିନ୍ଦୀକୂଳେ
ବୃନ୍ଦାବନେ ରାସକ୍ରୀଡ଼ା କୁତୂହଳେ
ବ୍ରଜାଙ୍ଗନା ଅନ୍ୟ ଅନ୍ୟ ରୂପ ଧରି (୮)
ପ୍ରଣମାମି ସଦା ରାମ କୃଷ୍ଣ ହରି ।

---

(୧) ଦନ୍ତାଗ୍ରେ । (୨) ପ୍ରାଣହରି । (୩) ବେଦ । (୪) ଯନ୍ତ୍ରମନ୍ତ୍ର ବ୍ରତ ସମ ଦମ ।
(୫) ଲେଖିନପାରେ । (୬) ସାର । (୭) ଅନେକ । (୮) ରୂପେ ମୋହି ଗୋପସ୍ତ୍ରୀ ।

(୩୦)

ଶ୍ରୀ ନନ୍ଦକୁମର ବଂଶୀ ଶୋଭେ କର
ଶ୍ରୀଚରଣାଶ୍ରିତ ଭକ୍ତବୃନ୍ଦ ଯା'ର
ଚଢ଼ୁର୍ଦ୍ଦଶଭୁବନଦାତା ଅଚ୍ୟୁତ ଯେ ସବୁର
ପ୍ରଣମାମି ସଦା ରାମ କୃଷ୍ଣ ହର ।

(୩୧)

ସୃଷ୍ଟି-ସ୍ଥିତି-ଉତ୍ପତ୍ତି-ପ୍ରଳୟକର୍ତ୍ତା
ସ୍ମୃତି-ଶ୍ରୁତି-ମନ୍ତ୍ରରୂପେ (୧) ବୁଦ୍ଧିଦାତା
ସତ୍ତ୍ୱ ରଜ ତମ ତିନ ମୂର୍ତ୍ତି ଧର
ପ୍ରଣମାମି ସଦା ରାମ କୃଷ୍ଣ ହର ।

(୩୨)

ସହସ୍ର ପଦ୍ମ ଶତ ଦଳ (୨) ଉପରେ
ଶେଷଦେବ ଫଣା (୩) ରତ୍ନ ମଣ୍ଡପରେ
ସଙ୍ଗେ ରାଧା ଚନ୍ଦ୍ରାବଳୀ ସୁକୁମାରୀ
ପ୍ରଣମାମି ସଦା ରାମ କୃଷ୍ଣ ହର ।

(୩୩)

ହର ବନ୍ଧୁ ଏ ସଂସାର ନୁହେଁ ସତ୍ୟ
ହର ସର୍ବଘଟେ ପୂର୍ଣ୍ଣଚନ୍ଦ୍ର ନିତ୍ୟ
ହର ଭଜ ଭବସିନ୍ଧୁ ହୁଅ ପାର
ପ୍ରଣମାମି ସଦା ରାମ କୃଷ୍ଣ ହର ।

(୩୪)

କ୍ଷଣଭଙ୍ଗୁର ଶରୀର ମିଥ୍ୟା ଦେଖ
ସ୍ଥିର କଥାକୁ ଏଡ଼େ ପରମ ସୁଖ
କ୍ଷେମେ ତାରବେ ଭକ୍ତ ଶାରଙ୍ଗଧାରୀ
ପ୍ରଣମାମି ସଦା ରାମ କୃଷ୍ଣ ହର ।

---

(୧) ଅଗୋଚର । (୨) ସତ ଅଷ୍ଟଦଳ । (୩) ବ୍ରହ୍ମା ।

ଲେଖକ : ଅଜ୍ଞାତ (ନରେନ୍ଦ୍ର ସୁନ୍ନୁ)

# ସୁନ୍ଦରୀ ଚଉତିଶା

( ରାଗ—କଉଶିକ )

କେବଣ ନାୟକ କାନ୍ତା ମାନ ଦେଖି
କହଇ ସ୍ପଷ୍ଟ ବଚନ ରେ ।
କରକ ଦଶନ ତୋହ୍ମ ମାନ ଦେଖି
ପୀଡ଼ୁଛି ମୋତେ ମଦନ ରେ, ସୁନ୍ଦରୀ ।
କହିଲି ବେଦନା ତୋତେ ରେ ।
କାମ-ସାଗରେ ପଡ଼ିଲି ପ୍ରାଣପକ୍ଷୀ
ରକ୍ଷାକର ବାରେ ମୋତେ ରେ । ୧ ।

ଖଞ୍ଜନଗଞ୍ଜନ ନୟନ ଯୁଗଳେ
ଟେକି ଗୃହ୍ଣ କିନା ମୋତେ ରେ,
ଖଟ୍ବାଙ୍ଗଧର ବିପକ୍ଷ ତୀକ୍ଷ୍ଣ ଶର
ଉପୁ ତେଜିବା କେମନ୍ତେ ରେ, ସୁନ୍ଦରୀ,
ଗଣ୍ଡି ତାପ ଦୟା କର ରେ ।
କ୍ଷୀଣୋଦରି ତୋର ଭ୍ରୂଲତା-ସର୍ପିଣୀ
ଦଂଶୁଛି ଜୀବନ ମୋର ରେ । ୨ ।

ଗାଢ଼ କରି ମାନ ବସିଛୁ ସୁମୁଖୀ
କି କେ ଅଧୋମୁଖ ହୋଇ ରେ,
ଗିରିଜାରମଣରିପୁ ତୋର ବିନୁ
ସନ୍ତେ ମୋତେ ନାଶଇ ରେ, ସୁନ୍ଦରୀ ।
ଗୁରୁ ମାନ ବେଗେ ଛାଡ଼ ରେ
ଗଜଗମନି ତୋ ସୁହୃଦେ ବସିବ
ସୁବାହୁ ଯୁଗଳେ ଭିଡ଼ ରେ । ୩ ।

---

କରକ—ଡାଲିମ୍ବ । ଖଟ୍ବାଙ୍ଗଧର ବିପକ୍ଷ—କାମଦେବ ।

ଘନକୁନ୍ତଳ ବେଣୀ ତୋର କି କାମୀ
ମାରଣେ କୁନ୍ତ ଥୋଇଛୁ ରେ,
ଘଞ୍ଚ ଘଟଣ ଅଳକା କି ମଧୁପ
ସଙ୍ଘ ପରାଏ ଦଶୁଛୁ ରେ, ସୁନ୍ଦରୀ,
ଘୋଷୁଥିଛୁ ତୋର ନାମ ରେ,
ଘନଜଘନ ତୋ ନାମ ନ ଘୋଷିଲେ
ପ୍ରାଣ ନସ୍ତୁନ୍ତାନ୍ତି କାମରେ ।୪।

ନୀଳ କୁଟିଳ କେଶ-ଧନୁଁ ତୋ ସ୍ଥଳ
ଅଷ୍ଟମୀ ଇନ୍ଦୁ ବାନ୍ଧାର ରେ,
ନିଷ୍ପନ୍ଦେ ସୁଧାପାନ ଆଶେ ଅଛନ୍ତି
କି ସେ ଅଳକା-ଚକୋର ରେ, ସୁନ୍ଦରୀ,
ନୀରଜ ବଦନେ ତୋର ରେ,
ନେଇ କପଟରେ ମଧୁପାନ ଆଶେ
କି ସେ ବେନି ମଧୁକର ରେ ।୫।

ଚନ୍ଦ୍ରବଦନି ତୋ ଲଲାଟ କି ଅବା
କାମ ହସ୍ତର କାର୍ମୁକ ରେ,
ସ୍ଥୂଳ ଭ୍ରୂଲତା ଗୁଣରେ କି ବିଶିଖ
ସିନ୍ଦୂର ଉଚ୍ଚ୍ୟ ଝଲକରେ, ସୁନ୍ଦରୀ,
ଚଣ୍ଡାଳ ମଦନ ମୋତେ ରେ,
ଚମକାଉଛୁ ମାରିବ ସେ ଧନୁରେ
ଶର ଯୋଖିଛୁ ନିରତେ ରେ ।୬।

ଛଇଳା ନାସା ତୋ ଦେଖି ଝଲପୃଷ୍ଠ
କ୍ଷୋଭେ ଷଣ୍ଢରେ ପଡ଼ିଲା ରେ ।
ଛଲପନ-ତାତ (୧) ଜଣିବା ନିମନ୍ତେ
କାମ ତୂଣୀର ସାଜିଲା ରେ, ସୁନ୍ଦରୀ,
ଛଟକ ନେଣେ କଜ୍ଜ୍ୱଳ ରେ,
ଛଇଲମଣି ତୋ କଟାକ୍ଷ-ଶରରେ
ମାରଦେଲା କି ଗରଳ ରେ ।୭।

---

(୧) ଛଲପନ-ତାତ—ଷଡ଼ାନନ, କାର୍ତ୍ତିକେୟଙ୍କ ପିତା ଶିବ ।

ଜାଣ୍ଡ୍ର ମଣି ହନେ ବାସ ରେଖର ଜାଲେ
ଜାହା କରଅଛୁ ମୋତେ ରେ,
ଜୁବତୀମଣି ତୋ ସେ ଗୁଣ ଗୁଣିଲେ
ଜ୍ୱର ପୀଡ଼ୁଛୁ ସନ୍ତତେ ରେ, ସୁନ୍ଦରୀ,
ଜନୁ କର ଧାତା ଆଣି ରେ,
ଜମ୍ବୁନଦଗାତ୍ର ତୋ ବିମ୍ବ-ଅଧରେ
ଜୋଗେଇ କାମ ବାରେଣି ରେ ।୮।

ଝଟକନ୍ଧାସି ତୋ ଦଶନ ଆବଳୀ
ଝୁଟର ଶିଖର ଗଞ୍ଜା ରେ,
ଝଳ ସିନ୍ଦୂରଫଳ ଆଳୀ କି ସିନ୍ଦୂର-
ରଜର ଯୋଗେ ବିରାଜ ରେ, ସୁନ୍ଦରୀ,
ଝାମ ଯାଉଛୁ ମୋ ଦେହ ରେ,
ଝଁନବଯନ ତୋ ଚରୂକ ଦେଖିଲେ
ଚନ୍ଦଧର ହେବେ ମୋହ ରେ ।୯।

ଞବୀନ ତାଟଙ୍କ କର୍ଣ୍ଣେରେ ତୋହର
ଶୋଭା ପାଉଛୁ ସନ୍ତତ ରେ,
ଞଶାନାଥ-ସଖା ସ୍ୟନ୍ଦନରେ କିଏ
ବେଳ ଚକ୍ର ବିରାଜିତ ରେ, ସୁନ୍ଦରୀ,
ଞଷ୍ଟହେବ ତୋ ବିନୁ ମୋତେ ରେ,
ଞର୍ମଳ ଶଶାଙ୍କ ପ୍ରାପ୍ତ ହୋଇ ମର୍ମ
ବିଦାରେ ମୋର ଞରତେ ରେ ।୧୦।

ଟେକ ନାସାରେ ତୋ କୁବଳୟଫଳ
ଟାଣେ ମୋ ଚିତ୍ତ ଟାଳୁଛୁ ରେ,
ଟଙ୍କଧରଶସ୍ତ ସଖା କୋଳେ କି ସେ
ସ୍ନେହେ ସେହ୍ନଣୀ ବସିଛୁ ରେ, ସୁନ୍ଦରୀ,
ଟେକ ତୋର ଚନ୍ଦ୍ରମୁଖ ରେ,
ଟେକ ପୁଷ୍ପଧନୁ ଅତନୁ ତୋ ବିନୁ
ମୋ ତନୁ କରୁଛୁ ଲକ୍ଷ ରେ ।୧୧।

ଠଣ ଗଣ୍ଡ ବେନ ତୋହର କି ମନ-
ସିଜ କନକ-ଦର୍ପଣ ରେ,
ଠିକେ ବନ୍ଧୁ ଯୁଗ ବସି ଧାନ୍ତାକାମୀ
ମାଇଣେ କଳ୍ପ ନିର୍ମାଣ ରେ, ସୁନ୍ଦରୀ,
ଠଣ ତୋ ମୁଖ ଦେଖିଲେ ରେ,
ଠଣପ୍ରସଖା କୁନ୍ତଳରେ ପଶିଲା
କମଳ ରହିଲା ଜଳେ ରେ ।୧୨।

ଡମ୍ବ କନକଗାଣ୍ଠି ତୋ ଦରକଣ୍ଠେ
ଅଛୁ କି ସପତ ସ୍ୱରରେ,
ଡାଳିମ୍ବଦନ୍ତ ତୋ ବଚନ ଶୁଣି ମୋ
ଦେହ ହେଉଛି ଅଥିର ରେ, ସୁନ୍ଦରୀ,
ଡିଙ୍ଗର ମଦନ ମୋତେ ରେ,
ଡମ୍ବରୁମଧ୍ୟା ତୋ ବିନୁ ତୀକ୍ଷ୍ଣଶର
ପ୍ରହାରୁଅଛି ନିରତେ ରେ ।୧୩।

ଢମ କହୁନାହିଁ ଶୁଣ ରେ ସ୍ୱଜନ
ରୁ ମୋର ଜୀବନ-ସଖି ରେ,
ଢଳୁଅଛି ମୋ ଜୀବ କାମ-ଶରଳେ
ରତ୍ନାକର ଚନ୍ଦ୍ରମୁଖି ରେ, ସୁନ୍ଦରୀ,
ଢଳ ତୋ ନୟନେ ଗ୍ରହାଁ ରେ,
ଢାଳେ ହେଁ ତୋ ବିନୁ ମୋ ଜୀବ ସନ୍ଦେହ
କଳନ୍ତି ରଡର ନାହାରେ ।୧୪।

ଏଣାଙ୍କମୁଖି ତୋ ସୁବାହୁ ଯୁଗଳ
ଶିରୀଷ କୁସୁମ ମାଳା ରେ,
ଅତ ସନୁକର ବଧାନ୍ତା ତହିଁରେ
କୋକନଦ ଝୁମ୍ପା ଦେଲା ରେ, ସୁନ୍ଦରୀ,
ଅନଙ୍ଗ ତୂଣୀର କି ଏ ରେ,
ଅଙ୍ଗୁଳି କପଟେ ସାୟକ ଚମ୍ପକ
କଳିକା ପଞ୍ଚ କି ଥୋଏ ରେ ।୧୫।

ତରଳନେତ୍ରି ତୋ ଘଟଣ କୁଚ କ
ତେଜ ହେମ ମହୀଧର ରେ,
ତରୁଣ କୁରଙ୍ଗଙ୍କୁ ହାସ୍ୟ ପାଶ କ
ପାତନ୍ତି ମାର-ଧୀବର ରେ, ସୁନ୍ଦରୀ,
ତୋଡ଼ୁ ବନୁ ମୋର ତନୁ ରେ,
ତଥ୍ୟ କହୁଛି ଶୁଣ ରେ ପ୍ରାଣବନ୍ଧୁ,
ମଦନ ଦହୁଛି ତନୁ ରେ । ୧୬ ।

ସ୍ଥବର ହୃଦସ୍ଥ ମାନସରେ ତୋର
କୁଚ-କମଳ-କଳିକା ରେ,
ସ୍ଥିର ରୋମାବଳୀ କି ଏ ମଧୁପାଳି
ଆଣେ ଭ୍ରମର ମାଳିକା ରେ, ସୁନ୍ଦରୀ,
ଅସ୍ଥେ ବସ୍ଥିରଇ ମନ ରେ,
ଥାନ ରମ୍ୟ ଦେଖି ତୋ ସ୍ତନଦ୍ୱଭରରେ
ରହିଲ କି ସେ ମଦନ ରେ । ୧୭ ।

ଦସ୍ତାକ୍ରମଣି ଧାତା ବସି ଯତନେ
କଟି ତୋ ନିର୍ମାଣ କଲା ରେ,
ଦୁର୍ବଳ ଦେଖି ସେ ତ୍ରିବଳି ବ୍ୟାଜରେ କି
ହେମ ଦାମ ବଳା ଦେଲା ରେ, ସୁନ୍ଦରୀ,
ଦାସ ଦୋଷ କ୍ଷମା କର ରେ,
ଦାରୁଣପଣ ତୋ ଦେଖି କାମ ଶର
ଦହୁଛି ମୋର ଶରୀର ରେ । ୧୮ ।

ଧୂର୍ଜଟି କ୍ରୋଧ ଅନଳରେ ପଡ଼ିଣ
ଅନଙ୍ଗ ବିନାଶ ଗଲା ରେ,
ଧାତା ଆଣି ତାର ଜନ୍ମ ସିଂହାସନ
ତୋର ନିତମ୍ବ ରଚିଲା ରେ, ସୁନ୍ଦରୀ,
ଧନ୍ୟ ତୋ ଶ୍ରୀମୁଖ ଦେଶ ରେ,
ଧୈର୍ଯ୍ୟ ନାଶୁ ଯୁବାଜନଙ୍କର ବୋଲି
ପ୍ରଭୁ ଦେଲା ପ୍ରକାଶଣ ରେ । ୧୯ ।

ନବ କଶୋଣ୍ଣି ତୋ ଜଘନଯୁଗଳ
ନନ୍ଦେ ବିପରୀତ ରମ୍ଭା ରେ,
ନୀରଜମୁଖି ତୋହର ମୁଖ ଦେଖିଲେ
ଲଜ୍ଜାକୁ ଲଭିବ ରମ୍ଭା ରେ, ସୁନ୍ଦରୀ,
ନକ୍ଷତ୍ର ତୋ ପାଦେ ଅଂଶି ରେ,
ନିର୍ମଳ ସ୍ଥଳ ସରସିଜ ରହିଲା
ନଭେ ରହିଲା କି ଶଶୀ ରେ ।୨୦।

ପର୍ଣ୍ଣ ସନ୍ଧିତ ଶରଚନ୍ଦ୍ର ଘେନଣି
ଅନଙ୍ଗ ଚଣ୍ଡାଳ ମୋତେ ରେ,
ପଲ୍ଲବାଧର ତୋ ବିନୁ ମୋ ଶରୀର
ସନ୍ତାପ୍ତ ଅଛି ନିରତେ ରେ, ସୁନ୍ଦରୀ,
ପ୍ରସନ୍ନେ ସୁମୁଖାନନ୍ଦ ରେ,
ପାର କର ମୋତେ କାମ-ସାଗରରୁ
ଲଜ୍ଜା ପାଉଛୁ ତୋ ଘେନି ରେ ।୨୧।

ଫୁଲ୍ଲୁଣାମୁଖି ତୋ ପାଇଁ ଗୁଣଗୁଣି
ଫାଟିଯାଉଛି ମୋ ଅଙ୍ଗ ରେ,
ଫଣିଧର ମୋତେ ଏମନ୍ତ କରିବେ
ଲଭିବ ତୋ ଅଙ୍ଗସଙ୍ଗ ରେ, ସୁନ୍ଦରୀ,
ଫିଟୁ ମାନ ଅନ୍ଧକାର ରେ,
ଫୁଲ୍ଲୁଣା ଚନ୍ଦ୍ର ପ୍ରକାଶ କର ସତ୍ତ୍ୱ
ହୃଦରେ ସରସ ଧର ରେ ।୨୨।

ବଲ୍ଲଭ ବହୁତ ବିନୟ କହନ୍ତେ
ବରାଙ୍ଗୀ ବୋଧ ନୋହିଲା ରେ,
ବିଧୁବଦନୀ ବିମ୍ବାଧର କମ୍ପାଇ
ନେତ୍ରୁ ନୀର ବରଷିଲା ସେ, ସୁନ୍ଦରୀ,
ବୁଡ଼ିଲା ମାନ-ସଲିଳେ ସେ,
ବହୁତ ବିନୟ ପୁଣି ସେ ନାୟକ
କହଇ ତାର ଆଗରେ ରେ ।୨୩।

ଭବମୋହନ ତୋର ବିନୁ ପଞ୍ଚଶର
ନେଲଣି ମୋର ଜୀବନ ରେ,
ଭକତ ଯେନରେ ଜାଣ୍ଡ୍ର ଶିରୋମଣି
କି ଦୋଷ କଲିଣୁ ମାନ ରେ, ସୁନ୍ଦରୀ,
ଛବେ ରୁ ଚୁମ୍ବନ ଦଣ୍ଡ ରେ,
ପ୍ରେମ-ଶସ୍ତ୍ର ତୋ ବିନୁ ତୀକ୍ଷ୍ଣ ନାରଚେ
ଛାଡୁଛୁ ମୋହର ଦେହ ରେ । ୧୪ ।

ମଙ୍ଗଳଚାମି ଯୋଗୀ ଯୋଗଭଙ୍ଗିନ
ସାହିତ୍ୟରସପଠନ ରେ,
ମନ୍ମଥମନ୍ତ୍ରନ ରସିକନ ଅବଲା
ମାନ ତେଜି ଚନ୍ଦ୍ରାନନ ରେ, ସୁନ୍ଦରୀ,
ମଦନ ତୀକ୍ଷ୍ଣ ବାଣ ରେ,
ମୃଦୁହାସିନ ତୋହ ବିନୁ କଷ୍ଟରେ
ନେଲଣି ମୋହ ଜୀବନ ରେ । ୧୫ ।

ଯାହା ବୋଲିଛି କନକ ବିଧୁମୁଖୀ
ଅଙ୍କରେ ବସାଇ ମୋତେ ରେ,
ଜୀବ ନେଉଛି ମଦନ ତୋ ସେ ଗୁଣ
ଗୁଣିଲେ, କହିଲି ତୋତେ ରେ, ସୁନ୍ଦରୀ,
ଯାଉଛି ଜୀବନ ମୋର ରେ,
କଳକଣ୍ଠି ତୋ ବିନୁଁ ଆଉ ମୋତେ
ନାହିଁ କିଛୁ ପ୍ରତିକାର ରେ । ୧୬ ।

ରମାକୁ କାନ୍ତ ସୃଷ୍ଟିଭ୍ରଷ୍ଟା କହନ୍ତେ
ନ ରସିଲା ତାର ମନ ରେ,
ରମଣୀମଣି ମାନ ଭଙ୍ଗ ନୋହିବା
ଜାଣି ନାୟକ ବହନ ରେ, ସୁନ୍ଦରୀ,
ରମ୍ଭୋରୁ ବେନି ଚରଣ ରେ,
ରସିକବର ଧଇଲା କାମଶରେ
ସନ୍ତତେ ହୋଇଣ ଶୀର୍ଣ୍ଣ ରେ । ୧୭ ।

ଲଳନାରତ୍ନ ଦେଖି ନେତ୍ର ଅନ୍ତେଣ
ବୃଦ୍ଧି ଅଳପ ହସିଲ ରେ,
ଲ୍ଲାଟମନ୍ନ ମାନ ଦୂର କରଣ
ବଦନ ଟେକ ବୃଦ୍ଧିଲ ରେ, ସୁନ୍ଦରୀ,
ଲଭିଲ ପରମସୁଖ ରେ,
ଲଳିତଗାତ୍ରୀ ଲାବଣ୍ୟ ଲପନରେ
ଚୁମ୍ବନ ଦେଲା ନାୟକରେ । ୨୮ ।

ବିଧୁବଦନା ରସିକନା କାନ୍ତକୁ
ସ୍ନେହେ ଆଲିଙ୍ଗନ କରି ରେ,
ବେନିଙ୍କର ଚିତ୍ତ ପ୍ରେମେ ଉନମତ୍ତ
ତନୁ ଅତନୁରେ ଢାଳ ରେ, ସୁନ୍ଦରୀ,
ବରାଙ୍ଗୀ ଅଙ୍ଗେ ବନ୍ଧନ ରେ,
ବଲ୍ଲଭରତନ ଶ୍ରୀହସ୍ତ ତୁଲାଇ
ମୁଖରେ ଦେଲା ଚୁମ୍ବନ ରେ । ୨୯ ।

ଷାଠିଏ ଗୁଣ-କଳା ଚଉଚାଇଶ ସେ
ନାୟକ ପ୍ରଣୟ କଲା ରେ,
ସୁମୁଖୀ ସ୍ନେହରେ ଶାନ୍ତ ନୋହିଣ ସେ,
ଆନ ଭାବ ଆଚରିଲା ରେ, ସୁନ୍ଦରୀ,
ସାତ୍ତ୍ୱିକେ ସେ ବେନି ଜନ ରେ,
ସରସଭରେ ସୁରଙ୍ଗ ଅଧରରୁ
କଲେ ସୁଧାରସ ପାନ ରେ । ୩୦ ।

ସରୋଜନେତ୍ରୀ ବିଶେଷ ଶ୍ରମ ପାଇ
ଶୁଢ଼ିଲା ନାୟକ କୋଳେ ରେ ।
ସେନେହବଶେ ନାଗର ନାଗରୀକି
ବିଞ୍ଚିଲା ବସନାଞ୍ଚଳେ ରେ, ସୁନ୍ଦରୀ,
ଶ୍ରମରେ ସେ ବେନି ଜନ ରେ,
ଶୀତଳ ଜଳ ପାନକରି ବନ୍ଧନ
ପିନ୍ଧିଲେ ପାଟବସନ ରେ । ୩୧ ।

ସନ୍ତୋଷ ହୋଇ  ବେନଜନେ ହରଷେ
ବସିଲେ ପଲଙ୍କପରେ ରେ,
ସୁଗନ୍ଧଚନ୍ଦନ ନେଇ କାନ୍ତ ପୁଣ
ଲେପିଲ କାନ୍ତା ହୃଦରେ ରେ,   ସୁନ୍ଦରୀ,
ସରୁ ବସନ ପିନ୍ଧାଇ ରେ,
ସୁମୁଖୀ କର୍ଣ୍ଣେ ତାଟଙ୍କ ବେନି ଖଞ୍ଜି
ଲଲାଟେ ତିଲକ ଦେଇ ରେ । ୩୨ ।

ହୃଷ୍ଟେ କବରୀ ବାନ୍ଧି ତନୁ ଉପରେ
ମୁକୁତା ସୀମନ୍ତେ ଦେଲ ରେ,
ହର ଶ୍ରେଣୀରେ କି ନିବିଡ଼ ନିର୍ମଳ
ଶୋଭିତ ତାରକା ମାଳା ରେ,   ସୁନ୍ଦରୀ,
ହରଣାକ୍ଷୀକ ନାସିକ ରେ,
ହୃଦରେ ହାର ଲମ୍ବାଇଣ ପାଦରେ
ଝଞ୍ଜିଲ ପାଦ-କଟକ ରେ । ୩୩ ।

କ୍ଷୀରୋଦସୀ ବେନି ହସ୍ତରେ ମର୍କତ-
କଙ୍କଣ ବେନି ଖଞ୍ଜିଲ ରେ,
ଛଇଳମଣି ନାସାପୁଟେ ନେଇଣ
ଗଜମୋତି ଲମ୍ବାଇଲ ରେ,   ସୁନ୍ଦରୀ,
ଛଛନ୍ଦେ ବେଶ ବଢ଼ିଲ ରେ,
କ୍ଷୀରୋଦସୁତା-ପତପାଦ-ସରୋଜେ
ନରେନ୍ଦ୍ର ସୁନୁ ଭଜିଲ ରେ । ୩୪ ।

ଲେଖକ : ଅଚ୍ୟୁତାନନ୍ଦ

# ଶରୀରଭେଦ ଚଉତିଶା

( ରାଗ—ରାମକେରୀ )

କର କୃଷ୍ଣନାମ ଭଜନ କହେ ଶ୍ରୀଚଇତନ
ଖିତର ମଧ୍ୟରେ ଖେଳନ୍ତି ଅନାଦି ପୂର୍ଣ୍ଣବ୍ରହ୍ମ । ୧ ।

ଗଲ ଗଲ ମନ ଦେଖ ହୋ ଗୋଲହାଟ ଉପର
ଘେରବସିଛନ୍ତି ଗୋପିକା କୃଷ୍ଣଛନ୍ତି ମଧ୍ୟର । ୨ ।

ଉଦୟ ଭାନୁର ପରାୟେ ତାଙ୍କ ଦଶଇ ଜ୍ୟୋତି
ଚକ୍ଷୁ ନଷ୍ଟଲେ ରଖିଲେ ଦେଖ ଦିବ୍ୟ ମୂରତି । ୩ ।

ଛନକା ନୁହ ତୁ ମନ ହୋ ଶୁଦ୍ଧ ହୃଦରେ ରହ
ଜଳ ପବନ ମଧ୍ୟରୁ ତାହାଙ୍କୁ ଆବୋର କହ । ୪ ।

ଝଳଲି ସୁବର୍ଣ୍ଣ ପରାୟେ ତାଙ୍କ ଦଶଇ ଜ୍ୟୋତି
ନିର୍ମଳ ହୃଦସ୍ଥ ହୋଇଲେ ଦେଖ ଦିବ୍ୟ ମୂରତି । ୫ ।

ଟାଣ ତୁ ନକର ମନ ହୋ ଟେକ ମନପବନ
ଠିକ କର ଯାଇ ଶୂନ୍ୟରେ ବଜେ ପରମବ୍ରହ୍ମ । ୬ ।

ଡକାଉଛି କାଳ ରହଣ ଡଗରକୁ ଜଣାଅ
ଢଳ ହଲ ବେନ ନୟନ ପଶ୍ଚିମକୁ ଫେରାଅ । ୭ ।

ଅଣହେଲା ଆଉ ନକର ଅଣ ଆତ୍ମାକୁ ଚହ୍ନ
ତ୍ରିପୁରକୁ ଲୟେ ଲଗାଇ ଥନପୁରକୁ ଜଣ । ୮ ।

ଥୟ କର ମନପବନ ଥାନ ଅନାହତରେ
ଦୃଷ୍ଟିକି ନଷ୍ଟଲେ ରଖିଲେ ଦେଖାଦେବେ ତତ୍କାଳେ । ୯ ।

ଧରୁ ଧରୁ ବଡ଼ା କରୁଛି ତାଙ୍କୁ ଧରଣ ଥିବୁ
ନୟନପିରୁଲା ଦୁଇଙ୍କ କେବେହେଁ ନ ଛାଡିବୁ । ୧୦ ।

ପରମାନନ୍ଦ ହିଁ ପୁଣଛି ଅପ୍ରତେ ତୁ ନକର ।
ବୃନ୍ଦାବନ ପରାୟେ ତାହାଙ୍କୁ ତୋଳଣ ଧର । ୧୧ ।

ବସିଥିବୁ ବଣା ନୋହିବୁ ବନ୍ଧୁ ବଳମ୍ବ ସେହି
ଭସ୍ମ ଗୁଡ଼ି ହେଲେ ନର୍ଭସ୍ମ ଆସି ପାଶେ ମିଳଇ । ୧୨ ।

ମତ୍ତ ଭଙ୍ଗି ପଣ ଆପଣେ ଝୁଲି ଝୁଲି ଆସନ୍ତି
ଜଳପବନର ମଧ୍ୟରେ ରୂପ ପ୍ରକାଶ ହୋନ୍ତି । ୧୩ ।

ରଙ୍ଗ-ଅଧରଙ୍କୁ ଏଠାରେ କେହି ଦେଖିଛ ପୁଣ
ଲ୍ବଣ୍ୟ ମୂରତ ହୁଅନ୍ତି ତାଙ୍କ ତେଜ ଘାଟେଣ । ୧୪ ।

ବନ୍ଧିଗଲ ନଦୀ ପର୍ବତେ ବନ୍ଧିଯାଉ ଅଛନ୍ତି
ଶ୍ରୀଚରଣ ଆଶ୍ଳେଷ ଧଇଲେ ଚକିତରେ ରହନ୍ତି । ୧୫ ।

ଶେଷ-ଅଙ୍ଗ କୃଷ୍ଣ ଅଙ୍ଗ ଯେ ସେ ତ ଅଭେଦ ଦୁଇ
ଶୂନ୍ୟରୂପୀ ହୋଇଅଛନ୍ତି ତର୍କ୍ଷ ରସ ଗଢ଼ଇ । ୧୬ ।

ହଜ ଯାଇ ମନ ସେ ରସେ ରସ ଅପ୍ୟାନ କର
ଗୁରୁ ଅଧମ ଅଚ୍ୟୁତଙ୍କୁ ଭବସାଗରୁ ତର । ୧୭ ।

ଲେଖକ : ଅଚ୍ୟୁତାନନ୍ଦ

## ଜଗନ୍ନାଥତତ୍ତ୍ୱ ଚଉତିଶା

କହଇ ଚୈତନ୍ୟ ବାରେ ଶୁଣ ରେ ମନାଇ,
କ୍ଷୀରସିନ୍ଧୁ ମଧ୍ୟେ ଦେଖ କଲ୍ପବଟ ଗୁଇ । ୧ ।

ଗୃପତ ହୋଇଛୁ ମହାନନ୍ତ୍ୟ ଯେଉଁଠାଇଁ,
ଘନ ଘନ ହୋଇ ନାଦ ମାଡ଼ଇ ସେଠାଇଁ । ୨ ।

ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମରେ ହେଜ,
ଙ୍କୃତଦ୍ୱାରେ ଆବୋର ରହିଛୁ ଗୃଶବେଦ । ୩ ।

ଗୁମ୍ଫ ଦର୍ଶନକୁ ବାଟ ପଡ଼ିଛୁ ସଧୀରେ,
ଜଗନ୍ନାଥ ମହାପ୍ରଭୁ ସିଂହାସନ ପରେ । ୪ ।

ଙ୍ଚିନ ଯେ ପତନି ଦେଖ ତାଙ୍କ ଅଙ୍ଗେ ଶୋଭା,
ନିତ୍ୟ କିଶୋରୀ ରାଧିକା ତାଙ୍କ ଅଙ୍ଗ ପ୍ରଭା । ୫ ।

ଟାକ ହର ବ୍ରହ୍ମା ଯାକୁ କରଛନ୍ତି ଧ୍ୟାନ,
ଠୁଲ ଶୂନ୍ୟ ପରେ ଦେଖ ଲଗିଛୁ ସନ୍ଧାନ । ୬ ।

ଡାକହାଲ ଶବଦ ନଶୁଁମ୍ବୁ ସେହିଠାଇଁ,
ଡୋଲା ସମାଧିକୁ ସ୍ୱହ୍ନା ଟ୍ଠୋଲାଇବୁ ନାହିଁ । ୭ ।

ନାଦରେ ବନ୍ଦୁକୁ ଯେବେ ପାରିବୁ ମିଶାଇ,
ଢନ ମୂର୍ତ୍ତି ଏକ ବ୍ରହ୍ମ ଦେଖିବୁ ସେଠାଇଁ । ୮ ।

ଅପ୍ନେ କର ମନ ନେଇ ଭ୍ରୂବୁମଧ୍ୟେ ଭର,
ଦୟା, କ୍ଷମା, ଶାନ୍ତ ହୋଇ ଦାସୀଅଙ୍ଗ ଧର । ୯ ।

ଧର୍ମ ଅର୍ଥ କାମ ମୋକ୍ଷ ହେଉଅଛୁ ଦୂର,
ନେବା ଆଣିବାକୁ ଆଉ ନାହିଁ ଯେ ବସ୍ତୁର । ୧୦ ।

ପାଣି ନାହିଁ ପଙ୍କ ନାହିଁ ମାଡ଼ୁଛୁ ଲହଡ଼ା,
ଫୁଲ ଗୋଟି ଫୁଟିଅଛୁ ସହସ୍ର ପାଖୁଡ଼ା । ୧୧ ।

ବାରବୁ ବାସନା ଯେବେ ଗୁରୁ ଆଜ୍ଞା ପାଇ,
ଭ୍ରମର ଚୁମ୍ବିବ ତେବେ କର୍ଣ୍ଣିକାରେ ରହି । ୧୨ ।

ମଲ୍ଲ ମଲ୍ଲ ବୋଲୁଛନ୍ତି ଶୁଣ ରେ କହ୍ନାଇଁ,
ଜଗତକୁ ମଲ୍ଲ ଜୀବ ପ୍ରେମେ ଟଳନାହିଁ । ୧୩ ।

ର ଏହି ରାଧିକାରୂପ ନକ୍ଷ୍ୟରେ ରଉଛୁ,
ଲପ୍ୟେ କର ଭୁଷଣ୍ଡ ଅମର ହୋଇଅଛୁ । ୧୪ ।

ବାଇ କ ପରଚେ ଯେବେ ହୋଇବୁ ସୁମନ,
ଶିଶୁବେଦ ଘରେ ଦେଖ ପ୍ରୁଆଙ୍ଗ ଭଜନ । ୧୫ ।

ସ୍ୟ ହି ଯେ ଶେଷଦେବ ଫଣୀମଣି ପରେ,
ସ୍ୱରୂପରେ ଥାଇ ଗୋପୀ ଅରୂପ ଦେଖିଲେ । ୧୬ ।

ହ ଟି ଅଟନ୍ତି ହର ହୃଦେ ତାଙ୍କୁ ଚହ୍ନ,
ହର-ଗୁଣି ମିଶାଇବୁ ସହଜ ସୁଜ୍ଞେଣ । ୧୭ ।

କ୍ଷମାନିଧି ପାଦପଦ୍ମେ ପଶ ଯା ଶରଣ,
ଗୁରୁ ବାଇ ଦାସ ଟୋକା ଅତ୍ୟନ୍ତ ଅଧମ । ୧୮ ।

---

ଲେଖକ : ଅଚ୍ୟୁତାନନ୍ଦ

# ପିଣ୍ଡ-ବ୍ରହ୍ମାଣ୍ଡ ଚଉତିଶା

( ରାଗ-ରସକୁଲ୍ୟା )

କାଳନ୍ଦୀ ମଧ୍ୟେ କମଳ ଫୁଟିଛି ଖୀନନାଳେ ନିରଞ୍ଜନ ଖେଳୁଛି,
ଗଗନ ଶିଖରୁ ଗୋଲହାଟପୁର, ଘଟଣ ପ୍ରତିମା ବଜେ ତଟର,
ହେବେ ଅସ୍ତ ହୋଇ ଚନ୍ଦ୍ର ଯେ,
ସୁହନ୍ତା କହନ୍ତା ବହନ୍ତ ଶୁଣନ୍ତା ଏକା ଘରେ ଭିନ୍ନ ଭିନ୍ନ ଯେ । ୧ ।

ଛନ୍ଦ ଚନ୍ଦ୍ରବନ ଛପନେ ରସ, ଜୀବ ପରମ ଏକାଘରେ ବାସ,
ଝର ଝର ଝନ ଧାର ଝରୁଛି, ନାବ ଘଟାଇ ତରାଇ ରଖିଛି ।
ଟେକି ରୁ ବାହା ହଜାଣି ଯେ,
ଠୂଳ ଶୂନ୍ୟ ପରେ ବଳ ଯେ ରଚିଛି ଗୁରୁ ସେବିଥିଲେ ଜାଣି ଯେ । ୨ ।

ବମ୍ବର ଫିଟିଛି ତାଳୁ ଦୁଆର, ତେଜ ପବନ ମାରଇ ନାସାର,
ଅନାହତରୁ ଶବଦ ଶୁଭୁଛି, ସେ ପୁର ସେ କୂଟେ ବାସ କରଛି ।
ଅସ୍ଥି କର ପଞ୍ଚମନ ଯେ,
ଦେହଳ ବାହାରେ ଦର୍ଶ ରହିଅଛି ପାଶଲେ କର ଦର୍ଶନ ଯେ । ୩ ।

ଧ୍ୟାନକ ଜାଗି ବଦରେ ପଶିବୁ, ନିରାକାର ନିରଞ୍ଜନ ଭେଟିବୁ,
ପଲକ ନ ପଡ଼ି ରହିବୁ ଯେବେ, ପୁଙ୍ଗା ବନ୍ଦେ ନୃତ୍ୟ ଦେଖିବୁ ତେବେ
ବୃନ୍ଦାବନେ ବଜେ ହରି ଯେ,
ଭଗତବତ୍ସଳ ଲୀଳା ଆଚରଣ ଘଟେ ଘଟେଛନ୍ତି ପୁରି ଯେ । ୪ ।

ମୁକୁନ୍ଦ ମାଧବ ମଧୁସୂଦନ, ଜୀବ ପରମ ନୋହେ ଭିନ୍ନ ଭିନ୍ନ,
ଗଉଛି ପରମ ଶୂନ୍ୟରେ ରହି, ଲହରୀ ମାରୁଛି ସୁମନାବାଇ
ଦଣ୍ଡନାଳେ ଆତଯାତ ଯେ
ଶୂନ୍ୟର ପୁରୁଷ ଶୂନ୍ୟେ ରହିଅଛି ଜୀବର ପରମ ତତ୍ତ୍ୱ ଯେ । ୫ ।

ସକାର ମକାର ହକାର ଝନ, ଓଁକାର ଅକ୍ଷର ଭେଦର ଧ୍ୱନି ।
ହରେ ଅଷ୍ଟନାମ ଗମାନ୍ଦ ସ୍ୱର, କୃଷ୍ଣ ସ୍ୱର ନାମ ତା ମଧ୍ୟେ ହରି,
କ୍ଷମାକର ମୋର ଦୋଷ ଯେ,
ଛନ୍ଦ ଚଉତିଶା ଜଣାଣ କରୁଛି ଭଣିଲେ ଅଚ୍ୟୁତ ଦାସ ଯେ । ୬ ।

ଲେଖକ : ଅଭିମନ୍ୟୁ ସାମନ୍ତସିଂହାର

## ଦୀନଜନ ଜଣାଣ ଚଉତିଶା

( ରାଗ—ଶୋକ-କାମୋଦୀ—ଶ୍ରୀରାଧା ବାଉଳୀ ବୃତ୍ତେ )

କୃପାସିନ୍ଧୁ-ଦୀନବନ୍ଧୁ-ଶ୍ରୀଚ୍ଛାମୁରେ

ଜଣାଉଛୁ ଅପରାଧୀ ଦୀନ (୧)

ଖେଦ-ଜଳଧିରେ ଭାସି ମୁଁ ଯାଉଛୁ

ଯାହୁକର ହୋଇ ସୁପ୍ରସନ୍ନ (୨)

ଆହେ ଗଦାଧର,

ଘୋଷଣା ବାଜୁଛି ଜନପୁର,

ଡକୁଛି କେତନ ପତିତପାବନ (୩) ଶରଣ୍ୟୋଦର ବର୍ଣ୍ଣମର । ୧ ।

ଚରାଚର-ଚରଣରିତ ଚଞ୍ଚଳା-

ପତି ଚତୁର୍ବର୍ଗଦାମୀ ତୁମ୍ଭେ

ଛୁଞ୍ଚି ସବୁ ଆଶା କରିଛୁ ଭରସା

ଏହି ଗୁଣମାନ ଧରି ଦମ୍ଭେ

ଆହେ ଜନାର୍ଦ୍ଦନ,

ଝଟତି ନହେଲେ ସୁପ୍ରସନ୍ନ, (୪)

ନିର୍ମଳ ଯଶ-କଳାନିଧି ଅଙ୍କରେ କଳଙ୍କ ଲଗିଯିବଟି ଜାଣ (୫) । ୨ ।

ଟାଣକରି କହୁଥାଇ ମହାପ୍ରଭୁ

ଅଖିଳ କୋଟି ବ୍ରହ୍ମାଣ୍ଡେଶ୍ୱର

ଠକେ ଏଥର ନିଶ୍ଚୟ ହସିବେଟି

ପ୍ରଭୁଙ୍କର ଦେଖି ଅବସ୍ଥର (୬)

ଆହେ ଡରହର,

ଢାଳେ କଲ ମୋତେ ପର ପର,

ଅଗଣୀ ଜନ ତୁଣ୍ଡେ ଶୁଣାଯିବ ପ୍ରଭୁ ହେଲେ ଅନୁଗତମର । ୩ ।

---

(୧) କହେ କେଉଁ ଦୀନ ହୋଇ ଅତି ହୀନ କରୁଣାନିଧାନ ସନ୍ନିଧାନ ।
(୨) ରଖ ରଖ ହୋଇ ସାବଧାନ । (୩) ଶରଣ୍ୟୋଦର । (୪) ସାବଧାନ ।
(୫) ଯେନ । (୬) ଅକୃପା ଦେଖି କରୁଣାନିଧିଙ୍କର ।

ତାପସସୁନ୍ଦର ମୃକଣ୍ଡ ପସର
ଅଗାଧ ସମୁଦ୍ର (୭) ମହାମେରୁ
ଛାଣ୍ଡର ଗର୍ବ ଲବକେ ଦଳପାର
ଟିକାକେ (୮) ତୁବକୁ କର ଦାରୁ
ଆହେ ଦୀନତ୍ରାଣ.
ଧ୍ରୁବ-ପ୍ରହଲ୍ଲାଦ-ନାରାୟଣ,
ନୃପ ନହୁଷ ଅଜାମିଳ ବ୍ୟାଧର (୯) ମିତ୍ରତାଭାବ କରିଛ ଜାଣ । ୪ ।

ପାଞ୍ଚାଳୀ ହରିଣୀ ଗଜ ଆଦ ଜାଣି (୧୦)
ଆରତେ ଡାକିଲେ ସଙ୍କଟରେ
ଫଣୀ ପୁଣ୍ଡରୀକ ବେଣ ଛଦ୍ମ କାଳ
ଗଢ଼ ଦେଲ ଦ୍ରୋହ କଳଠାରେ
ଆହେ ବିଶ୍ୱମ୍ଭର, (୧୧)
ଭକ୍ଷିଲ ଶବରୀଚାଖା ଫଳ,
ମନ୍ଦୋଦରୀ ଇଳା ଅହଲ୍ୟା ପିଙ୍ଗଳା ମାନଙ୍କୁ ଟି ପରି (୧୨) ଗଢ଼ ଦେଲ । ୫ ।

ଜାମ୍ବବାନ (୧୩) ବାଳୀ ମସ୍ତ ସୁଗ୍ରୀବର
ବିଭୀଷଣର ତ ସୁଖଦାତା
ଟଙ୍କ ଦାମୋଦର ସୁଦାମ (୧୪) ସୁବଳ
ମିତ୍ରତା ଭାବକୁ ଅଛ ଦେଖ
ଆହେ ଲୋକନାଥ,
ବିଦୁରର ବାଞ୍ଛା କଲ ସ୍ୱାର୍ଥ,
ଦରିଦ୍ରକୁଳ-ତିଳକ ସୁଦାମାର ପୂର୍ଣ୍ଣ କରିଦେଲ ମନୋରଥ । ୬ ।

---

(୭) ଅଚଳ ମହିମା । (୮) ଟେକିଲେ । (୯) ଧୀବର ।
(୧୦) ପାଞ୍ଚାଳୀ, ହରିଣୀ, ଦ୍ୱିଜ ଗଜ ଶ୍ରେଣୀ ଆରତ ନାଶିଲ ଇଙ୍ଗିତରେ ।
(୧୧) ବିଶ୍ୱପାଳ । (୧୨) ତାରିଦଙ୍କୁ ଭାବେ । (୧୩) ଜାମ୍ବୁବାନ, ହନୁମାନ ।
(୧୪) ସୁଦାମା ସୋଦର ।

ସମନପୁରକୁ ଗୁରୁପୁତ୍ର ଆଣି
ଅଙ୍କକୁ ଦ୍ୱନ୍ଦ୍ୱରେ ଚକ୍ଷୁ ଦେଲ
ସେ ମହିମାମାନ ଏବେ କେଉଁଣେ ଗଲା
ଶ୍ରୀହସ୍ତ ଚକ୍ର କି ହଜାଇଲ (୧୫)
ଆହେ ହୃଷୀକେଶ,
କ୍ଷମା କର ଯାନଜନ (୧୬) ଦୋଷ,
ଅଭୟ ଚରଣେ ଶରଣ ପଶୁଛି ଅଭିମନ୍ୟୁର ପୁତ୍ରଅ ଆଶ (୧୭) । ୭ ।

---

ଲେଖକ : କରୁଣାକର ଦାସ

## କଳାକର ଚଉତିଶା

କୃଷ୍ଣ ଗଲେ ମଧୁପୁରୀ
କେମନ୍ତେ ବଞ୍ଚିବେ ଗୋପର ନାରୀ, ହେ କଳାକର,
କଂସ ତ ହେଲା ଭଗାରୀ । ୧ ।

ଖଟିଥିଲୁ ପାଦ ତଳେ
ଖଣ୍ଡିଲା ଦଇବ ଆମ୍ଭର ମେଳେ, ହେ କଳାକର,
ଖଣ୍ଡି ପଞ୍ଜରର ମେଳେ । ୨ ।

ଗୋପାଳପୁଅଙ୍କ ମେଳେ
ଗାଈ କେ ରଖିବ ଯମୁନା କୂଳେ, ହେ କଳାକର,
ଗୀତ ଗାଇ ନୀପମୂଳେ । ୩ ।

ଘର ହେଲା ଘୋର ବନ
ଘନଶ୍ୟାମ ବିନୁ ନ ଜାଣୁ ଆନ, ହେ କଳାକର,
ଘରେ ରହୁନାହିଁ ମନ । ୪ ।

---

(୧୫) ଯେଉଁ ଶ୍ରୀବ ମନେନାହିଁ ମହାପ୍ରଭୁ ବାହୁଥିଲ ଯୁଦ୍ଧେ ପାର୍ଥ ରଥ ।
(୧୬) ଅପରାଧୀ ।
(୧୭) ପୁରୁ ଦୀନ ଅଭିମନ୍ୟୁ ଆଶ ।

ଙାଳାମ୍ବର ଗଲେ ଗୁଣ୍ଡି
ଙସ୍ତମ କରଣ କନ୍ଦୁଛୁଁ ଫେଣ୍ଡି, ହେ କଳାକର,
ଙଷ୍ଟପ୍ର ଦେବୁ ଦଣ୍ଡି । ୫ ।

ଚଣ୍ଡାଳ ଅକ୍ରୂର ପିଣ୍ଡ
ଚୃରନ୍ଦୁ ରଥପରେ ଟଣ୍ଡ ଟଣ୍ଡ, ହେ କଳାକର,
ଚକ୍ରେ ଛେଦବୁ ମୁଣ୍ଡ । ୬ ।

ଗୁଣ୍ଡିକର ଗଲେ ଏବେ
ଷଣେ ନରହ୍ଲେ ଆମ୍ଭର ସଙ୍ଗେ, ହେ କଳାକର,
ଛନ୍ଦ କଲେ ନନ୍ଦ ସଙ୍ଗେ । ୭ ।

ଜୀବ ଯିବା ବଡ଼ ସୁଖ
ଜୀଇ ଥାଉ ଥାଉ ପାଇଲୁ ଦୁଃଖ, ହେ କଳାକର,
ଜଗତେ ହସିବେ ଲୋକ । ୮ ।

ଝାସିବୁ ସାଗରେ ଗୋଇ
ଝଁନବସନଆ ଉଇଲେ ନାହିଁ, ହେ କଳାକର,
ଝୁରୁ ମଲୁ ଗୋପଗୋଇ । ୯ ।

ଞସ୍ତମ କରଣ ଗଲେ
ନରହ୍ନ ଆସିବୁ ବୋଲି ବୋଇଲେ, ହେ କଳାକର,
ନାଗରୀ ସଙ୍ଗ ପାଇଲେ । ୧୦ ।

ଟଳାଟଳ ପଣ କଲେ
ଟେକ ରଥ ଚଢ଼ି ମଥୁରା ଗଲେ, ହେ କଳାକର,
ଟାଣ ଆମ୍ଭର ଛାଙ୍ଗିଲେ । ୧୧ ।

ଠାକୁର ସେ ନୀଳାମ୍ବର
ଠକି ଭଣ୍ଡି ଗଲେ ମଥୁରାପୁର, ହେ କଳାକର,
ଠକ ସେ ପାପୀ ଅକ୍ରୂର । ୧୨ ।

ଡୋଳାପିରୁଲା ଗୋବିନ୍ଦ
ଡକାଇତ କଂସ କଲା କି ବାଦ, ହେ କଳାକର,
ଡୁବାଇ ଦେଲା ସଂପଦ । ୧୩ ।

ଢମାଳିଆ ପୀତବାସ
ଢାଳେଣ୍ଡେଁ ଆମ୍ଭଙ୍କୁ କଲେ ନିରାଶ, ହେ କଳାକର,
ଢୋକବୁ ଗରଳ ବିଷ । ୧୪ ।

ଅସୁର ମାୟା ତାଙ୍କର
ଉଦ୍ଧାର କରି ଗଲେ ମଧୁପୁର, ହେ କଳାକର,
ଆସୁଛ ନାହିଁ ଆମ୍ଭର । ୧୫ ।

ତ୍ରିଭୁବନେ ଦେଖା ନାହିଁ
ତରୁମୂଳଆକୁ ପାଇବୁ କାହିଁ, ହେ କଳାକର,
ଗଲେ ମନରୁ ନ ଯାଇ । ୧୬ ।

ଥୋଇ ହରାଇଲୁ ଧନ
ଅଣ୍ଟି ମାରି ନେଲ କର୍ଣ୍ଣ-ସୁବର୍ଣ୍ଣ, ହେ କଳାକର,
ଥଏ ହେଉନାହିଁ ମନ । ୧୭ ।

ଦୀନ ଦୟାଳୁ ଶ୍ରୀହରି
ଦୁଃଖ ଦେଇ ଗଲେ ମଥୁରାପୁରୀ, ହେ କଳାକର,
ଦିନ ନସରଇ ଝୁରି । ୧୮ ।

ଧନ୍ୟ ତା ତ୍ରିଭଙ୍ଗ ଠାଣି
ଧଇର୍ଯ୍ୟ ଧରିବ କେଉଁ ତରୁଣୀ, ହେ କଳାକର,
ଧୂରୁ ନ୍ୟନ୍ତ ମନ କଣି । ୧୯ ।

ନସ୍ତାର ତାହାଙ୍କ ଜନ
ନେଇ ଗୁଡ଼ିଗଲେ ବନ୍ଧନ ଜନ, ହେ କଳାକର,
ନ ପଡ଼ିଲୁ ଆଉ ମନ । ୨୦ ।

ପରତେ ନ ଥିଲା ମନ
ପୁଣି ସେ ଭେଟିବୁ ଶ୍ରୀବୃନ୍ଦାବନ, ହେ କଳାକର,
ପୂର୍ବନ୍ତୁ ଅଛ ଯତନ । ୨୧ ।

ଫୁଲଗଛକୁ ସଜାଡ଼ି
ଫିଟାଇ କେ ଯେନ ଗଲାକ ବେଢ଼ି, ହେ କଳାକର,
ଫେରି ମୁଁ କଥାଏ ଏଢ଼ି । ୨୨ ।

ବରହୀ-ବାଙ୍କ ଚୂଳିଆ
ବାଙ୍କନୟନ ସେ ତରୁମୂଳିଆ, ହେ କଳାକର,
ବଡ଼ ଅଟନ୍ତ୍ର ମେଳିଆ । ୨୩ ।

ଭରସା ତ ଦିଶୁ ନାହିଁ
ଭଗାରିହସା ତ କଲେ କହ୍ନାଇ, ହେ କଳାକର,
ଭଗତବନ୍ଧୁ ବୋଲଇ । ୨୪ ।

ମାସ୍ୱାଧର ଝାଲାମ୍ବର
ମାସ୍ୱା କରି ଗଲେ ମଥୁରାପୁର, ହେ କଳାକର,
ମେଲାଣି ଆମ୍ଭଙ୍କ କରି । ୨୫ ।

ଯାମଳା-ଅର୍ଜ୍ଜୁନ-ଭଞ୍ଜି
ଯିବାକୁ ଗୋପରୁ ହୋଇଲେ ସଜ, ହେ କଳାକର,
ଜନ ମୁଖେ ଦେଇ ଲଜ । ୨୬ ।

ରସ କନ୍ଦରୂକ ବାଢ଼ି
ରହିଲେ ମଥୁରା ଏ ସୁଖ ଛାଡ଼ି, ହେ କଳାକର,
ଗ୍ରାସ ଦବା ଗଲୁ ସଢ଼ି । ୨୭ ।

ଲକ୍ଷ୍ମୀ ତ ଶ୍ରୀଧରଧର
ଲଳିତ ଲଗିଣ ଜ୍ୟୋତ ମଧୁର, ହେ କଳାକର,
ଲଏ ନୋହେ ବ୍ରହ୍ମାସୁର । ୨୮ ।

ବ୍ରହ୍ମା ନେଲେ ବଚ୍ଛା ହରି
ବଚ୍ଛା ଯେତେକ ସେ ଆପଣା କରି, ହେ କଳାକର,
ବରଷକେ ଦେଲେ ଫେରି । ୨୯ ।

ଶ୍ରୀକରେ ମନ୍ଦର ଗିରି
ସ୍ୱର୍ଗେ ଇନ୍ଦ୍ର ତାଙ୍କୁ ନୁହନ୍ତି ସରି, ହେ କଳାକର,
ଶ୍ରୀପାଦେ ତ ଗଲି ହାରି । ୩୦ ।

ଶ୍ୟାମବନ୍ଧୁ ଅମ୍ଭ ପ୍ରାଣ
ସତେ କି ଦେଖିବୁ ନନ୍ଦନନ୍ଦନ, ହେ କଳାକର,
ସରିଲା ଆମ୍ଭର ଟାଣ । ୩୧ ।

× ⊠ ×

ସତ୍ୟ କରିଥିଲୁ ସୂର୍ଯ୍ୟଙ୍କୁ ଛୁଇଁ, ହେ କଳାକର,
ସେ ସତ୍ୟ ରହିଲା ନାହିଁ । ୩୨ ।

ହରିବେ ଆମ୍ଭର ଦୁଃଖ
ହୋଇଅଛୁ ଆମ୍ଭେ ଅତି ନିରେଖ, ହେ କଳାକର,
ହୃଦରେ ରଖିବେ ସୁଖ । ୩୩ ।

କ୍ଷେମାନିଧି ମଧୁପୁର
କ୍ଷେମା ଦେବେ ତାସ କରୁଣାକର, ହେ କଳାକର,
କ୍ଷିତ୍ର କଥା ଯାଉ ଦୂର । ୩୪ ।

ଲେଖକ : କପିଳେଶ୍ୱର ବିଦ୍ୟାଭୂଷଣ

# ଶିବ ଆରତତ୍ରାଣ ଚଉତିଶା

( ରାଗ—କାମୋଦୀ )

କେହି ଦୁଃଖୀ ଦୁଃଖରେ      କହଇ ବିନୟରେ
ବୃଷଭ ପଛେ ଉଭାହୋଇ,
କରଯୋଡ଼ି ମସ୍ତକେ      ବୋଲଇ ଗଳୁ ଶୋକେ
ମୋର ଏ ପୀଡ଼ା ଗଲାନାହିଁ ।
ହେ ସଦାଶିବ !
କରିଛି ତୁମ୍ଭ ପାଦେ ଆଶ,
କରିବାକୁ ଏ ଦୁଃଖ ନାଶ ।
କେତେ ବିପତ୍ତି କେତେ      ରୂପେ ଦଣ୍ଡନ୍ତି ଯେତେ
କରି ନପାରେ ପରକାଶ । ୧ ।

ଖଟ୍ୱାଙ୍ଗଧର ତୁମ୍ଭ      ବିନା ସହାୟ ହେବ
କେ ମୋତେ ନ ଦିଶେ ଲୋକରେ,
ଖଳ ବ୍ୟାଧି ବିପତ୍ତି      ମୋତେ ଦଣ୍ଡ ଦିଅନ୍ତି
ରଜନୀ କିମ୍ବା ଦିବସରେ ।
ହେ ସଦାଶିବ !
ଖଳନାଶନ ତୁମ୍ଭ ବାନା,
ଖଣ୍ଡି ନଦେଲେ ମୋ ବେଦନା
ଖାଇବି କାଳକୂଟ      ଏହା ନ ମଣ କୂଟ
ତୁମ୍ଭଙ୍କ ନିନ୍ଦା ହେବ ସିନା ହେ । ୨ ।

ଗଙ୍ଗାଧର କରୁଣା      ନ କଲେ ମୋ ଠିକଣା
ରହିବା ପରି ନ ଦିଶଇ,
ଶରକଣ୍ଠ ଏ କଥା      ଗେଲ ନୁହଇଁ ଯଥା
କହୁଛି ଏଥେଁ ମିଥ୍ୟା ନାହିଁ ।
ହେ ସଦାଶିବ !

ଗରବ କର ଏ ବପତ୍ତି,
ଗଞ୍ଜୁଛୁ ମୋତେ ଦବାରାତ୍ର ।
ଗଲି ଶରଣ ତୁମ୍ଭ ପାଦେ ଗିରିଜାଧବ
କରୁଣା ପ୍ରକଟାଅ ଝାଟ ହେ । ୩ ।

ଘଣ୍ଟଧର ହେ କେତେ ଭକ୍ତ ତୁମ୍ଭଙ୍କ ଠାରେ
ବାଞ୍ଛିତ ବର ପାଇଛନ୍ତି,
ଘୋର ଦୁର୍ଦ୍ଦଶା ମୋର ଦେଖି ହୃଦ କାତର
କପର ଯିବ ମୋ ଦୁର୍ଗତି ।
ହେ ସଦାଶିବ !
ଘଞ୍ଚାଳ କର ଦଶା ମୋର,
ଘାଣ୍ଟୁଛୁ ରଜନୀ ବାସର ।
ଘୁଞ୍ଚାଇ ଦେଇ ମୋର ସୁଖକୁ ସେ ପାମର
କରୁଛୁ ମୋତେ ଗ୍ଲାରଖାର ହେ । ୪ ।

ଅନ୍ଧକ ବନାଶନ ଅନଙ୍ଗ ବମର୍ଦ୍ଦନ
ଅନଳ ଶଶୀ ରବ ନେତ୍ର,
ଅନାଇ କୃପାନେତ୍ରେ ଏ ଦାନକୁ କଷ୍ଟରେ
ରଖାଅ ସୁଖ କର ଦତ୍ତ ।
ହେ ସଦାଶିବ !
ଅଶେଷରୂପେ ତୁମ୍ଭ ପାଦେ,
ଅଛୁ ଭରସା ଅପ୍ରମାଦେ ।
ଅତ ସୁଖେ ରଖାଇ ରୋଗ ଶୋକାଦ ନେଇ
ଫିଙ୍ଗାଇଦେବ ସିନ୍ଧୁ ମଧ୍ୟେ ହେ । ୫ ।

ଚଉରଦଶ ଲୋକ ମଧ୍ୟେ ପଡ଼ୁଛୁ ଡାକ
ଶିବଭକତ ଯେଉଁ ନର,
ଚଉରବର୍ଗ ତାର ଚରଣେ ନମସ୍କାର
କରନ୍ତି ଏହା ସତ୍ୟ ଗିର ।
ହେ ସଦାଶିବ !
ଚନ୍ତା ମୁଁ କରଅଛୁ ତାହା,
ଚନାଏ ମୋରେ କଲେ ଦୟା ।
ଚଣ୍ଡାଳ ଦୁଃଖ ମୋର ନୁହନ୍ତା କ ଅନ୍ତର
କାହାକୁ କହିବ ମୁଁ ଏହା ହେ । ୬ ।

ଛାର ଦୁର୍ଦ୍ଦଶା ମୋତେ ଦଣ୍ଡୁଅଛି ଯେତେ
ଦଣ୍ଡେ ହେଁ ସୁଖେ ନ ରଖାଇ,
ଛାଡ଼ି ସବୁ ଭରସା ତୁମ୍ଭ ଚରଣେ ଆଶା
କରିଛୁ ଉଦ୍ଧରିବା ପାଇଁ ।
ହେ ସଦାଶିବ !
ଛନ୍ଦ ନବୁଝ କଥା ମୋର,
ଛ-ଆଠ ଭୁବନଈଶ୍ୱର !
ଛାମୁରେ ନିବେଦନ କରେ ହେ ପଞ୍ଚାନନ
ନାଶ ମୋ ବିପଦାନଳର ହେ । ୭ ।

ଜଗନ୍ନାଥ ତୁମ୍ଭେ ଜୀବଜନ୍ତୁ ଏ ଭବେ
ଯେତେ ତା ସକଳ ପାଳୁଛ,
ଜଣାଉଛୁ ଯେ ଯାହା ତୁମ୍ଭ ଆଗେ ସେ ତାହା
ପାଉଛୁ ଏହା ନୁହେ ମିଛ ।
ହେ, ସଦାଶିବ !
ଜଗତେ ମୁଁ ନୁହଇ ଆନ,
ଜାଣି ତା ପ୍ରଭୁ କି ନସ୍ପନ !
ଜଞ୍ଜାଳ ଏ ଦୁଃଖର ବିନାଶି ବେଗେ ମୋର
ଦାରେ କରୁଣା କର ଦାନ ହେ । ୮ ।

ଝସକେତୁ-ବଇରି କୃପା ମାନସେ ଧରି
ଏ ଦୀନ ଦୁଃଖ ନାଶକର,
ଝଟ କରୁଣାନୀର ନ ବରଷିଲେ ହର
ସରୁଛି ମୋର ଏ ସଂସାର ।
ହେ ସଦାଶିବ !
ଝୁରୁଛି ରଜନୀ ବାସର,
ଝିମିଟେ ସୁଖ ନାହିଁ ମୋର ।
ଝାମ ଯାଉଛି ଦେହ ହୋଇବାରୁ ଅସହ
ରୋଗ-ଶୋକର ପୀଡ଼ାଭାର ହେ । ୯ ।

ନଗସୁତା-ନାୟକ ଦେଖି ମୋର ଏ ଦୁଃଖ
କରୁଣା ନ କରିବ ଯେବେ,

ନବପଞ୍ଚ ଭୁବନେ ଶୁଣିଲେ ଏହା ଜନେ
କାହାକୁ ନିନ୍ଦାବାଦ ଦେବେ ।
ହେ ସଦାଶିବ !
ନମଣି ମିଛ ମୋ କଥାକୁ,
ନିମିଷେ ବିସ୍ମର ମନକୁ ।
ନକଲେ ମୋତେ ରକ୍ଷା ମାନସେ ବନ୍ଧୁ କକ୍ଷା
ଅଯଶ ହୋଇବ ତୁମ୍ଭଙ୍କୁ ହେ । ୧୦ ।

ଟଳିଯିବ ମୋ ଜୀବ ଯେବେ ହେ ଗିରିଧବ
ତୁମ୍ଭ ଚରଣ ଆଶ୍ରା କରି,
ଟାଣ ରଖି ଦୁର୍ଦ୍ଦଶା କରିବ ଲୋକହସା
ତୁମ୍ଭ ଦାନାକୁ ତିନିପୁରି ।
ହେ ସଦାଶିବ !
ଟାପରି ନବୁଝ ମୋ ଗିର,
ଟଙ୍କଧର ହେ ବିଶ୍ୱମ୍ଭର !
ଟଳୁଅଛି ମୋ ଦେହ ଟିକାଏ ଯେ ସେନେହ
ନ ରଖିଲେ ମୁଁ ହେଲି ସ୍ଥିର ହେ । ୧୧ ।

ଠାକୁର ଜଗତର ତୁମ୍ଭେ ହେ ଶୂଳଧର
ଜାଣନ୍ତି ଏହା ତିନିପୁରରେ
ଠିକଣା କରି ସେହି କଥାକୁ ଉମାସାଇଁ
ନ ରଖି ଭରସା କାହିଁରେ ।
ହେ ସଦାଶିବ !
ଠକାମି କରି ଏ ବିପତ୍ତି,
ଠକୁଛି ମୋତେ ଦିବାରାତି,
ଠହରାଇ ଯେ ଦୀନ- ଜନ ସହାୟହୀନ
ମରମ କାଟୁଛି ବିକୋଠ ହେ । ୧୨ ।

ଡାକ ବାଜୁଛି ମହୀ- ମଣ୍ଡଳେ ସର୍ବଗ୍ରାହୀ
ଶିବ ଭକତ-ଜନ-ବନ୍ଧୁ,
ଡମ୍ବରୁଧର ତାହା ଜାଣି ଭଜ ଉତ୍ସାହା
ତରିବାପାଇଁ ଏ ବିପଦୁ ।
ହେ ସଦାଶିବ !

ଡରେ ଭଜୁଛୁ ତୁମ୍ଭ ନାମ,
ଡଙ୍ଗର ରୋଗ ହୋଇ ବାମ
ଡାକେହାକେ ଦହଇ　　କାହାକୁ ନ ମାନଇ
ଏଣିକି ଦୂର କରୁଛୁ କରମ ହେ । ୧୩ ।

ଢୋକ ଗରଳ ତିନି-　　ପୁର ନିବାସୀ ପ୍ରାଣୀ
ରଖିଛ ବିପଦରୁ ତାରି,
ତମ ଏ କଥା ନୋହେ　　ପୁଣି ପୁଣି ମୁଁ କହେ
ବୁଝ ତା ମାନସେ ବିଶ୍ବଶ ।
ହେ ସଦାଶିବ !
ତାଳେ କରୁଣା-ବାରି ବାରେ,
ଢଳାଇଦେଲେ କଣ୍ଠତରେ,
ତମ କରିଛ ଯେଉଁ　　ବିପଦ ଗୃହୁଁ ଗୃହୁଁ
ପଶିଲା ଯାଇ ପାତାଳରେ ହେ । ୧୪ ।

ଅନାଥ ଜନଠାରେ　　ସୁଦୟା କଲେ ବାରେ
ଲୋକରେ ଦିଶିବ ସୁନ୍ଦର,
ଅଛୁ କେ ଆଉ ମୋର　　ତୁମ୍ଭବିନା ହେ ହର
ଏ କଥା ବାରେକ ବିଚାର ।
ହେ ସଦାଶିବ !
ଅନାଥନାଥ ତୁମ୍ଭ କଥା
ଆନକୁ ଲାଗେ ଗରୁ ବ୍ୟଥା
ଅମଙ୍ଗଳ ରୂପରେ　　ବିହର ନିରନ୍ତରେ
ହୋଇ ସକଳ ଶୁଭଦାତା ହେ । ୧୫ ।

ତିନିଲୋକର ନାଥ　　ହେ ପ୍ରଭୁ ତିନିନେତ୍ର
ତିନିଗୁଣର ଜନ୍ମଦାତା
ତରୁଣ ଶଶୀ ଶିଖ　　ନାଶି ମୋର ଏ ଦୁଃଖ
ଲୋକରେ ରଖାଅ ଏ କଥା ।
ହେ ସଦାଶିବ !
ତୁମ୍ଭ ବିନା କେ ଆଉ ମୋତେ
ତାରିବ ନିଦାଶେ ଜଗତେ,
ତରିଅଛନ୍ତି କେତେ　　ତୁମ୍ଭ ନାମ ଭଜନ୍ତେ
ବିପଦୁଁ ଶୁଣିଛି ମୁଁ ଏତେ ହେ । ୧୬ ।

ଅସ୍ତ ନୋହୁଁଛ ଚନ୍ଦ୍ର    ରୋଗ ଦୁଃଖ ସନ୍ତତ
ପୀଡ଼ା ଦେବାକୁ ଘନଘନ
ଅରୁଛୁ ମଜ୍ଜା ମୋର    ନଶି କବା ବାସର
କପଟ ଏଥିରେ ନ ଘେନ ।
ହେ ସଦାଶିବ !
ଅକାଳ ଦେଉଛ ବିପତ୍ତି ।
ଅଗ୍ରଇଁ କର ଦଣ୍ଡ-କାଠ
ଥରକୁ ଥର ମୋର    ଉପରେ ଯେ ପ୍ରହାର
କରୁଛ ହୋଇ କୋପମତ୍ତ ହେ ।୧୭।

ଦଣ୍ଡ ଦାଅଇ ଯେତେ    ରୋଗବିପତ୍ତି ମୋତେ
ତୁମ୍ଭଙ୍କ କବା ଅଗୋଚର,
ଦସ୍ତା ସଲିଳ କଣା    ବିତରିଲେ ଯେ ବଣା
ହୋଇବ ବିପାକ ତାହାର ।
ହେ ସଦାଶିବ !
ଦଣ୍ଡିଲ ଦଣ୍ଡ ଦୁଃଖ ପାଇଁ,
ଦରିଦ୍ର ସୁଖରେ ହେଲଇ
ଦଅ ବା ସୁଖଦୁଃଖ    ତୁମ୍ଭ ବିନା ନରେଖ
ହେବ ମୁଁ ସତ କହୁଲଇଁ ହେ । ୧୮।

ଧର୍ମମଣ୍ଡଳେ ଶିବ    ନାମକୁ ମୁଁ ବିଭବ
କରିଛୁ ଏଥେଁ ମିଥ୍ୟା ନାହିଁ,
ଧିଆନ ମୋର ବଣା    କରୁଛୁ ପଢ଼ ହଣା
ବିପତ୍ତି ଦଣ୍ଡ ଦେବାପାଇଁ ।
ହେ ସଦାଶିବ !
ଧରିଛୁ ତୁମ୍ଭଙ୍କ ସହାୟ
ଧରାରେ ହେବାକୁ ନିର୍ଭୟ,
ଧିକ୍କାରୁ ଅଛ ତେବେ    ଏ ରୋଗ ପରାଭବେ
ସର୍ବଦା ଲଭିବାକୁ ଜୟ ହେ । ୧୯ ।

ନାହିଁ ଭରସା ମୋର    ଆନ ହେ ଗଙ୍ଗାଧର
କେବଳ ଶିବ ନାମ ବିନା,
ନିରେଖ ଦେଖି ମୋତେ    ରୋଗଶୋକାଦ ଯେତେ
ଦଣ୍ଡନ୍ତ କରି କେତେ ଅନା ହେ ।

ସଦାଶିବ !
ନ କଲେ କରୁଣା ମୋ'ଠାରେ,
ନାଶ ମୁଁ ହେବଟି ଏଠାରେ ।
ନାଶ ହେବାର ଦୁଃଖ ନାହିଁ ହେ ପଞ୍ଚମୁଖ
ଜଳୁଛୁ ରୋଗ ପୀଡ଼ବାରେ ହେ । ୧୦ ।
ପଞ୍ଚବଦନ ମୋତେ ଅନାଇଁ କୃପାନେତେ
ଏ ରୋଗ-ଶୋକରୁ ଉଦ୍ଧର,
ପଶିଅଛୁ ଶରଣ ଆଶ୍ରେ ତୁମ୍ଭ ଚରଣ
ଚଳେ ଆନକୁ ମଣି ଗ୍ଳର ହେ ।
ସଦାଶିବ !
ପଡ଼ି ଏ ବିପଦସାଗରେ,
ପାରୁନାହିଁ ଯେ ଭେଦ ବାରେ ।
ପାର ହେବ କପର ତୁହଁ ହେ ନିସ୍ତର
ବତାଇ ଦିଅ କରୁଣାରେ ହେ । ୧୧ ।
ଫନ୍ଦା ଶ୍ରୀ ଶିବପଦ କର ଯାହା ବିପଦ
ଦାଉରୁ ତର ନ ପାରିଲ
ଫେଡ଼ି ଏ କଥା କାହା ଆଗେ କହିବ ଯାହା
କଷଣ ସବଦା ଭୋଗିଲ ହେ
ସଦାଶିବ !
ଫିଟାଇ କହିଦିଅ ଗିର
ଫଳବ ନାହିଁ ବାଞ୍ଛା ତୋର,
ଫିଟିଯାଉ ଲୋକରେ ଗହ୍ୱାଦ ଦଶାପରେ
ନାହିଁ ଦେବଙ୍କ ଅଧିକାର ହେ । ୧୨ ।
ବୋଇଲେ ଶିବ ଶିବ ପାପ-ତାପ ସରିବ
ଗହ୍ୱାଦ ପୀଡ଼ା ନ ବାଧଇ,
ବ୍ରହ୍ମାଣ୍ଡରେ ଏ କଥା ହୋଇଥିବାରୁ ପୋଥା
ସକଳ ଆଶା ଗ୍ଳଡ଼ଦେଇଁ ହେ
ସଦାଶିବ !
ବସି ଦିବସ ରଜନୀରେ,
ବନ୍ଧୁ ବାନ୍ଧବ ତେଜି ଦୂରେ
ବସ୍ତୁ ପରା ଏ ଶିବ ନାମକୁ ହୃଦେ ଟାବ
ଦେଇ ଖବୁଛୁ ନରକରେ ହେ । ୧୩ ।

ଭରସା ତୁମ୍ଭ ପାଦେ  ରଖିଅଛୁ ବିପଦେ
ଘାରି ନୋହିବା ପାଇଁ ହର,
ଭଣ୍ଡାଇ ମୋତେ ପାପ-  ଗ୍ରହ କରଇ ଲୋପ
ମୋ ଜ୍ଞାନ-ଧ୍ୟାନକୁ ପାମର ହେ,
ସଦାଶିବ !
ଭାଙ୍ଗି ନ ଯାନ୍ତେ ଟାଣି ତାର
ଭଙ୍ଗିରେ କରଇ ଧିକ୍କାର,
କ୍ଷମ ହେ କ୍ଷୁଦ୍ର ମୋର  ନ ଖଣ୍ଡିଲେ ସତ୍ୱର
ହେବ ସବୁରେ ଛି-ଛି-କାର ହେ । ୧୪ ।

ମହୀମଣ୍ଡଳେ ତୁମ୍ଭ  ମହିମା ଖ୍ୟାତ ହେବ
ମୋ ପରି ପାପୀଙ୍କି ତାରିଲେ,
ମୋ ଜ୍ଞାନ-ଧ୍ୟାନ ଯାହା  ଅଗୋଚର କି ତାହା
ତୁମ୍ଭଙ୍କୁ ବିଶ୍ୱେଶ ତା ଭଲେ ହେ,
ସଦାଶିବ !
ମୋତେ ସଦା ଏ ପାପଗ୍ରହ
ମନ୍ଥୁଛି ନାହିଁ ସନ୍ଦେହ ।
ମନକୁ ମୋର ସ୍ଥିର  ନକରେ ଦୁରାତ୍ମର
କି କରିବଇଁ ଫେଡ଼ କହ ହେ । ୧୫ ।

ଯେବେ ମୋର ଏ ପାପ  କରି ନପାରେ ଲୋପ
ତୁମ୍ଭ ମହିମା ଗଙ୍ଗାଧର,
ଯାଉ ଏ ମୋ ଜୀବନ  ଆଉଁ କି ପ୍ରୟୋଜନ
ନିନ୍ଦା ହୋଇବ ପ୍ରଭୁଙ୍କର ହେ,
ସଦାଶିବ !
ଯମଯାତନାଠାରୁ ବଳି
ପାଉଛି ଏ ଦୁଃଖ ଆବଳୀ,
ଯଶ-ପତାକା ମହୀ-  ମଣ୍ଡଳରେ ଉଡ଼ାଇ
ଦିଅ ଏ ବିପଦକୁ ଦଳି ହେ । ୧୬ ।

ରହିଛି ଜୀବ ଶିବ-  ନାମକୁ ଯେ ବିଭବ
ଗଣ୍ଠିରତନ ପରି କରି,
ରଖାଇ ଦେଉନାହିଁ  ମୋ ଜ୍ଞାନ-ଧ୍ୟାନ ଏହି
ବିପଦ ଉଦୟ ଶଙ୍କା ହେ ।

ସଦାଶିବ !
ଯାଉଛୁ କପଣ ସ୍ୱପନେ,
ରଖିବ ନାହିଁ ମୋତେ ପ୍ରାଣେ,
ଯଦି ପତିଭୂଷଣ ନକଲେ ପରିତ୍ରାଣ
ରଖିବ କେବା ଆଉ ଜଣେ ହେ । ୨୭ ।
ଲମ୍ବୋଦର-ଜନକ ବିପଦ-ବିନାଶକ
ତୁମ୍ଭେ ଏ ଚରାଚରେ ଜାଣି,
ଲକ୍ଷ୍ୟ ରଖିଛୁ ଏହା ନିଷ୍ଟେ ଗଉଘାନାହା
ମୋର ଦୁଃଖକୁ ଦେବେ ହାଣି ହେ,
ସଦାଶିବ !
ଲଗି ନଗଲେ ଏ ବିପଦ,
ଲଭି ଶରଣ ତୁମ୍ଭ ପାଦ,
ଲଜ୍ଜା ହେବ କାହାକୁ ବିଶ୍ୱର ଉଚିତକୁ
ଛୁଣ୍ଡାଅ ଲୋକ-ଅପବାଦ ହେ । ୨୮ ।
ବ୍ରହ୍ମା ହୋଇ ଜନମ ତୁମ୍ଭଠାରୁ ନିସ୍ପନ୍ନ-
ହଲେ ଜଗତ ସର୍ଜିଲେ,
ବିଗତ ଜନ୍ମାନ୍ତର ପାପପୁଣ୍ୟ ନିକର
ପ୍ରାଣୀଙ୍କି ଦୁଃଖ ସୁଖ ଦେଲେ ହେ,
ସଦାଶିବ !
ବଳ ତୁମ୍ଭଙ୍କ ପାଇ ଭବେ,
ବିଧାତା ଲେଖାକୁ କି ଯେବେ,
ବନ୍ଦ କର ମାନବ ଲୋକେ ସିନା କହିବ,
ଶିବଙ୍କ କୃପା ନାହିଁ ଏବେ । ୨୯ ।
ଶରଣାଗତଠାରେ କୃପା ନକଲେ ବାରେ
ଆଉ ସେ କାହାକୁ ଭଜିବ,
ଶଶିଶେଖର ଏହା ବିଚାର ଭଲ ଯାହା
ଦଶୁଛୁ ମୋତେ ଜଣାଇବ ହେ,
ସଦାଶିବ !
ଶୋକସାଗରେ ମୋର ଭେଳା
ଶେଷକୁ ବୁଡ଼ିବା ଦିଶିଲା,
ଶୁଣିଲେ ଜନେ ଏହା କି ବୋଲିବେଟି ତାହା
ବିଶ୍ୱର ବାରେ ଭେଜ ହେଲା ହେ । ୩୦ ।

ଷଡ଼ାର୍ଦ୍ଧ ଭୁବନରେ ଭରସା ଆନଠାରେ
ନାହିଁ ମୋହର ଏହା ସତ,
ଷଡ଼ଗୁଣ ଅରି ଅଛନ୍ତି ମୋତେ ଘେରି
ଛାଡ଼ନ୍ତି ନାହିଁ ଜଗି ପଥ ହେ,
ସଦାଶିବ !
ଷଟ ଐଶ୍ୱର୍ଯ୍ୟ ଫଳଦାତା
ଷଡ଼ବଦନଙ୍କର ପିତା,
ଷଟ ଚକ୍ର ଗୃହରେ ସ୍ମରଣରେ ତୁମ୍ଭର
ମହିମା କରି ନୋହେ ଚିନ୍ତା ହେ ।୩୧।

ସଂସାର ଜନ୍ତୁଙ୍କର ସବୁ ଭରସା ହର
ତୁମ୍ଭେ, ଏ କଥା ନୋହେ ମିଛ,
ସକଳ ଜନେ ଏହା ପୁଚ୍ଛିଲେ କେବେଁ କାହା
କହିବ ତୁମେ ତାହା ସ୍ୱଚ୍ଛ ହେ,
ସଦାଶିବ !
ସହୁଛି ପଡ଼ି ମୁଁ ସଙ୍କଟରେ,
ସହି ବିପଦ ବାରେ ବାରେ ।
ସବୁ ଭରସା ତେଜି ତୁମ୍ଭ ନାମକୁ ଭଜି
ଧରିଛି ତରିବା ଆଶରେ ହେ ।୩୨।

ହର ଏ ଦୁଃଖ ମୋର ଆହେ ଖଟ୍ୱାଙ୍ଗଧର
ସହୁଛି ମୁଁ ବଡ଼ କଷଣ,
ହେଜୁଛି ବେଳେ ବେଳେ ମୋର କି ପାପଫଳେ
ହେଲି ମୁଁ ଏ ଦୁଃଖେ ଭୂଷଣ ହେ,
ସଦାଶିବ !
ହେଜିଲେ ବାରେ ଶିବନାମ
ହରଇ ପାତକ ବିଷମ,
ହୁଏ ସେ କଥା ବୃଥା ମୋ ମନ୍ଦ ଭାଗ୍ୟେ ଯଥା
ସ୍ୱପନ ଲଭ ସୁଖଧାମ ହେ ।୩୩।

କ୍ଷମା କର ମୋ ଦୋଷ ଆହେ ଭୂଧର-ଈଶ
ଉଦ୍ଧର ଏ ଦୁଃଖସାଗରୁ,
କ୍ଷମାସାଗର ଶିବ ଏ କଥା ଅଟେ ଧ୍ରୁବ
ଶୁଣନ୍ତେ ଜନ ବଦନରୁ ହେ,

ସଦାଶିବ !
କ୍ଷଣେ କ୍ଷଣେ ମୁଁ ଗୁମ୍ଫ ନାମ
କ୍ଷିତିରେ ଭଜନ୍ତୁ ଉତ୍ତମ,
କ୍ଷମେ ରଖାଅ ମୋତେ                    ବିଦ୍ୟାଭୂଷଣ ଚନ୍ଦ୍ରେ
ଭଜେ ଶିବଙ୍କୁ ଅଭିରାମ ହେ । ୩୪ ।

---

ଲେଖକ : କାଶୀନାଥ କର

## ସଜନୀ ଚଉତିଶା

କୁଞ୍ଜେ ଚନ୍ଦ୍ରପା କୁମାରୀ,          କହନ୍ତି ଶ୍ରୀମତୀ କରକୁ ଧରି ଯେ
କହିଁ ନଗଲେ କୁଞ୍ଜବିହାରୀ, ସଜନୀ ଗୋ । ୧ ।
କ୍ଷୀଣ ହେଲା ଏବେ ଚନ୍ଦ୍ର,          ଖଣ୍ଡି ଗଲେ ସୁଖ ନନ୍ଦର ସୂନୁ ଯେ
ଝୀନ୍ଦ ନନ୍ଦନ ନ ଦେଖି ଖାନ୍ତୁ, ସଜନୀ ଗୋ । ୨ ।
ଗନ୍ଧବନ୍ଦୁ ବଂଶୀଧାରୀ,          ଗୁଣ ଗୁଣି ତନୁ ହେଉଛି ଘାରି ଯେ
ଗଙ୍ଗାଧରଶସ୍ତ୍ର ଦେଲା ସାରି, ସଜନୀ ରେ । ୩ ।
ଘନବରନ ସୁନ୍ଦର,          ଘର କଲେ ଯାଇ ମଥୁରାପୁର ଯେ
ଘାଣ୍ଟି ହେଉଛି ଅମ୍ଭ ଶରୀର, ସଜନୀ ରେ । ୪ ।
ଉମାକାନ୍ତ-ଶସ୍ତ୍ର-ପିଡା,          ଉନ୍ମତ କରଲେ ଗୋପୀଙ୍କ ଚନ୍ଦ୍ରା ଯେ
ଉରେ ଲଦ୍ଧିଦେଲେ କୃଷ୍ଣଚନ୍ଦ୍ରା, ସଜନୀ ରେ । ୫ ।
ଚନ୍ଦ୍ରାମଣି ଚନ୍ଦ୍ରା ଦେଲେ,          ଚନ୍ଦ୍ରାମଣି ଦେଇ ମଥୁରା ଗଲେ ଯେ
ଗ୍ବରବନେ ଆସିବୁ ବୋଇଲେ, ସଜନୀ ଗୋ । ୬ ।
ଛଇଲ ନାଗର କାହ୍ନୁ,          ଛନ୍ଦେହେଁ ପାଶୋରି ନଯାଏ ମନୁ ଯେ
ଛନ୍ନ ମୋ ଭୁଙ୍ଗ ଯେହ୍ନେ ବନୁ, ସଜନୀ ଗୋ । ୭ ।
ଜାମଳା-ଭଞ୍ଜା ଗୋପାଳ,          ଜଡ଼ିଆଇ ଚୂଳେ କେତକୀ ଫୁଲ ଯେ
ଜାମ୍ବୁଡ଼ାଳ ଚନ୍ଦ୍ରିକ ମଞ୍ଜୁଳ, ସଜନୀ ଗୋ । ୮ ।
ଝୁରୁଛୁ ସେ ଶୋଭାବନ,          ଝାମ୍ପିଦିଏ କି ଚପଳା ଗଗନ ଯେ
ଝମ ଝମ କରଇ ନୟନ, ସଜନୀ ରେ । ୯ ।
ନକୁଞ୍ଜ କୁଞ୍ଜେ ରହଣ,          ନକୁଞ୍ଜ ଘାଟ ମାଗନ୍ତି ମୋହନ ଯେ
ନଚ୍ଛୋ ଚନ୍ଦ୍ର ନ ସରଇ ଦାନ, ସଜନୀ ଗୋ । ୧୦ ।

ଟେକି ଗୋବର୍ଦ୍ଧନ ଗିରି, ଟାପେଣ କରି ଗୋପର ଶିରି ଯେ
ଟାଣେ ଶଚିପତି ଗଲ ହାରି, ସଜନୀ ଗୋ । ୧୧ ।

ଠାକୁର ସେ ବନମାଳୀ, ଠୂଳ ଚୂଳେ ଶୋଭାପାଏ ନଆଳି ଯେ
ଠେକେ କାଣୀ କରି ମନେ ଖ୍ୱାଳି, ସଜନୀ ଗୋ । ୧୨ ।

ଡେରିଥାଉ କର୍ଣ୍ଣ ଦେଇ, ଡାକଇ ଯେସନିକ ମୁରଲୀ ଧ୍ୱନି ଯେ
ଡରେ ଯେହ୍ନେ ଘଉଆ ହରିଣୀ, ସଜନୀ ଗୋ । ୧୩ ।

ଢମାଳିଆ ନନ୍ଦ କାହ୍ନୁ, ଢଳି ନାଚେ ଧରି ମୋହନବେଣୁ ଯେ
ଢାଳେ ପାଶୋରି ନଯାଏ ମନୁ, ସଜନୀ ଗୋ । ୧୪ ।

ଆତୁର ଆଶା ଲଗାଇ, ଆସିବୁ ବୋଲି ଗଲେ ଆଶା ଦେଇ ଯେ
ଆଶା ଲଗି କ୍ଷୀଣ ଗୋପଗୋଇ, ସଜନୀ ଗୋ । ୧୫ ।

ତରଳ ବାଙ୍କ ଚାହାଣୀ, ତ୍ରୈଲୋକ୍ୟ ମୋହଇ ସେ ବେଣୁପାଣି ଯେ
ତ୍ରିସ୍ଥ ମାନ କେଉଁ ଛାର ପୁଣି, ସଜନୀ ରେ । ୧୬ ।

ଥପ୍ପ ନୋହେ ପଞ୍ଚମନ, ଥରାଏ ଧଇର୍ଯ୍ୟ ମୀନକେତନ ଯେ
ଥରେ ଶୁଣିଲେ ମୁରଲୀସ୍ୱନ, ସଜନୀ ରେ । ୧୭ ।

ଦମ୍ଭ ରଖିବୁ ଅମ୍ବର, ଦିଗମ୍ବରୀ ଗୁଣେ ନାଶିବୁ ଶମ୍ବର ଯେ
ଦୟା ନ କଲେ ଶାର୍ଗଧର, ସଜନୀ ରେ । ୧୮ ।

ଧରନେଲ ଦଣ୍ଡଧାରୀ, ଧ୍ରୁବ ମୁଁ କହୁଛି ଶୁଣ ସୁନ୍ଦରୀ ଗୋ
ଧୀରେ ପାଇଲେ ମଧୁନାଗରୀ, ସଜନୀ ରେ । ୧୯ ।

ନାଗର ନନ୍ଦକୁମର, ନାଗରରଙ୍ଗିଆ କେଡେ ମଧୁର ଗୋ
ନାରୀ ମୋହିବାର କେଉଁ ଛାର, ସଜନୀ ଗୋ । ୨୦ ।

ପଦ୍ମ ଥାଇ ପଦ୍ମକରେ, ପଦ୍ମ ଥାଇ ପଦ୍ମ ପଦ୍ମିନୀ କରେ ଗୋ
ପଦ୍ମମୁଖ ପାଶୋରି ରହିଲେ ସଜନୀ ଗୋ । ୨୧ ।

ଫାଟିଯାଏ ହିଆ-ମନ, ଫାନ୍ଦେ ପକାଇଲା ମୀନକେତନ ଯେ
ଫୁଲମାଳିଆ କଲାରୁ ଭିନ୍ନ, ସଜନୀ ରେ । ୨୨ ।

ବୃନ୍ଦାବନିଆ ଶ୍ରୀଧର, ବୃନ୍ଦାବତୀ ଯେଣୁ କଲେ ଅନ୍ତର ଯେ
ବନେ କଲେକ ଯେତେ ପ୍ରକାର ସଜନୀ ଗୋ । ୨୩ ।

ଭକତ ଜନ ବାନ୍ଧବ, ଭୃତ୍ୟଠାରେ ଯେବେ ସୁଦୟା ଥିବ ଯେ
ଭଲେ କାଣୀ କରନ୍ତି ତାରବ, ସଜନୀ ଗୋ । ୨୪ ।

ମୁକୁନ୍ଦ ମାଧବ ହରି, ମାରଦେଇ ଗଲେ ବ୍ରଜନାଗରୀ ଯେ
ମଧୁପୁରେ ରହିଲେ ବିହରି, ସଜନୀ ଗୋ । ୨୫ ।

ଜଗତ-ଜନମୋହନା, ଯଶୋଦା ନନ୍ଦର ନାଗର କାହ୍ନା ଯେ
ଯୁବା ଯୁବତୀ-ଜୀବନଯେନା, ସଜନୀ ରେ । ୨୬ ।

ରାହାସରଙ୍କି ଆ ହରି, ରହିଲେ ଯେ ବନ ମଥୁରାପୁରୀ ଯେ
ରହେ ଦେବତାର୍ଥ ବସୁନ୍ଧରା, ସଜନୀ ରେ । ୨୭ ।
ଲକ୍ଷ୍ମୀବଲ୍ଲଭ ପଦ୍ମରେ, ଲସ୍ତୁ ଲଗାଅ ଭବା-ରଜନୀରେ ଯେ
ଲୂତାସୂତ୍ର ଯେସନେ ବନ୍ଧରେ, ସଜନୀ ରେ । ୨୮ ।
ବନଜ ନନ୍ଦା ସମସ୍ତେ, ବେନ କରନ୍ତି ବାହୁଡ଼ାବିଜୟେ ଯେ
ବେଢ଼ି ଶୋଭାପାନ୍ତି ବ୍ରଜପୋଏ, ସଜନୀ ରେ । ୨୯ ।
ସଖୀଙ୍କି ସ୍ନିହି ଶ୍ରୀମତୀ, ଶୁଣାନ୍ତି କୃଷ୍ଣଙ୍କ ଗୁଣ କୀରତ ଯେ
ଶୁଣି ଖଣ୍ଡୁ ଅଶେଷ ଦୁର୍ଗତ, ସଜନୀ ରେ । ୩୦ ।
ଶୁଣ ଗୋ ସଖୀ ବୋଇଲେ, ଶ୍ରୀକୃଷ୍ଣ ଆସିବେ କି ନାହିଁ ଭଲେ ଯେ
ସୁଧାପାନ କରିବା ନିଶ୍ଚଲେ, ସଜନୀ ରେ । ୩୧ ।
ଶ୍ରୀକୃଷ୍ଣ ପଦ୍ମପାଦରେ, ସୁଜନେ ଚିତ୍ତ ରଖ ନିରନ୍ତରେ ଯେ
ସୁଖେ ତରିବ ଭବସାଗରେ, ସଜନୀ ରେ । ୩୨ ।
ହରିଗୁଣମାନ ଶୁଣି, ହରଷେ ରହିଲେ ମନମୋହିନୀ ଯେ
ହରି ଖଣ୍ଡିବେ ଦୁର୍ଗତ ପୁଣି, ସଜନୀ ରେ । ୩୩ ।
କ୍ଷମାନିଧି ପାଦେ ହରି, କ୍ଷୀତ ମଧ୍ୟେ ଯଶ ରହିବ ପୂରି ଯେ
କାଶୀ କରକୁ ଦେବେ ଉଦ୍ଧାର, ସଜନୀ ରେ । ୩୪ ।

---

ଲେଖକ : କୃତ୍ତିବାସ

## ବାଲୁଙ୍କେଶ୍ୱର ଜଣାଣ ଚଉତିଶା

କେଉଁ କର୍ମସ୍ଥାନ କରଇ ଜଣାଣ ବାଲୁଙ୍କେଶ୍ୱରଙ୍କୁ ସ୍ନିହି,
କରପଦ୍ମ ଯୋଡ଼ି ପଦ୍ମପାଦେ ପଡ଼ି ବୃଷଭ ପଛରେ ରହି ହେ ।
ଆହେ କରୁଣାସାଗର । କର କୃପା ମୋଠାରେ ସତ୍ୱର ହେ । ୧ ।

ଖରେ ମୋ ଗୁହାରି ଶୁଣ ଶୂଳଧାରି କ୍ଷଣେ ବିଲମ୍ବ ନ କର,
କ୍ଷିତିମଣ୍ଡଳରେ କେ ତୁମ୍ଭ ବାହାରେ ଭରସା ଅଛି ମୋହର ହେ ।
ଆହେ ଖଟ୍ୱାଙ୍ଗଧାରଣ, ଖେଦ-ସିନ୍ଧୁରୁ କର ତାରଣ ହେ । ୨ ।

ଗଣନାରେ ମହୀମଣ୍ଡଳରେ କେହ୍ନ୍ୟାହିଁ ପାପୀ ମୋ ସଦୃଶ,
ଗଙ୍ଗାଧର ମୋତେ ତାରିଲେ ଜଗତେ ରହିବଟି ବଡ଼ ଯଶ ହେ ।
ଗର୍ବ କରୁ ଏ ବିପତ୍ତି, ଗଞ୍ଜି ଅଛି ମୋତେ ଦବାଗ୍ରତ ହେ । ୩ ।

ଘନକୁ ଚାତକ ପରି ମୁଁ ଅନେକ ଆଶା କରିଛି ତୁମ୍ଭଙ୍କୁ,
ଘୋର ଆର୍ତ୍ତିକାଳେ ଚାହିଁ କୃପାଡ଼ୋଳେ ତାର ଏ ଦୀନ ଜନକୁ ହେ ।
ଘୁଞ୍ଚୁ ଏ ଘୋର ଦୁର୍ଦ୍ଦଶା, ଘଣ୍ଟାଧର ତୁମ୍ଭେ ମୋ ଭରସା ହେ । ୪ ।

ନିରଗ୍ରସ୍ତ ଜନଠାରେ ଅବଧାନ ଯେବେ ହରି ନ କରିବ,
ନିଶ୍ଚେ ହେଲେ ବାମ ଦୀନବନ୍ଧୁ ନାମ ଏହିଠାରୁ ଦୂର ହେବ ହେ ।
ନବପଞ୍ଚ ଭୁବନରେ, ନାହିଁ ଭରସା ତୁମ୍ଭ ବାହାରେ ହେ । ୫ ।

ଚତୁର୍ଦ୍ଦଶ ପୁର ଉଡ଼ଇ ଯାହାର ଭସ୍ମାଙ୍କର ନାମେ ବାନା
ଚଣ୍ଡୀକାନ୍ତ ବିନୁ କେ ଅଛି ମୋ ମନୁ ନାଶିବ ଘୋର ବେଦନା ହେ ।
ଚନ୍ଦ୍ର ବିନୁ ଚକୋରର, ଚଞ୍ଚୁପୁଟେ କେ ଦେବ ଆହାର ହେ । ୬ ।

ଛାଡ଼ି ସର୍ବ ଆଶା କରିଛି ଭରସା ରସାରେ ତୁମ୍ଭ ଚରଣ,
ଛାର ଏ ବିପତ୍ତି ନ ଗଲେ ଅକୀର୍ତ୍ତି ପାଇବ ଉମାରମଣ ହେ ।
ଛାଡ଼ିଯିବଟି ଜୀବନ, ଛନ୍ଦ ନ ମଣ ଭୃତ୍ୟ ବଚନ ହେ । ୭ ।

ଜନକତନୁଜାପତି କରି ପୂଜା ବର ମାଗିଲେ ତୁମ୍ଭଙ୍କୁ,
ଜାଗ୍ରତ ନିଦ୍ରାରେ ରହି ଏ ସ୍ଥାନରେ ତାରିଲ ପାପିମାନଙ୍କୁ ହେ ।
ଜଟାଧର ତା ଆଦରି, ଜାଣି କରିଦେଇଛ ପାସୋରି ହେ । ୮ ।

ଝିମିଟେ ଅନ୍ତର ନୋହିଲା ଏ ଘୋର ସନ୍ତାପ ମୋହର ଅଙ୍ଗରୁ,
ଝୁରି ଝୁରି ଦାସ ଯେବେ ଯିବ ନାଶ କି ହେବ ପ୍ରଭୁପଣରୁ ହେ ।
ଆହେ ଝସକେତୁ ହର । ଝଟିତରେ ଶୁଣ ମୋ ଗୁହାରି ହେ । ୯ ।

ନବଜଳଧର ବିନୁ ଚାତକର କେହି ନାହିଁଟି ଶରଣ,
ନିଶ୍ଚେ ମୋର ରସାମଣ୍ଡଳେ ଭରସା ମାତ୍ର ତୁମ୍ଭ ଶ୍ରୀଚରଣ ହେ ।
ଆହେ ନଗସୁତାପତି, ନରଖିଲେ ଭୃତ୍ୟର କି ଗତି ହେ । ୧୦ ।

ଟଙ୍କଧର ତୁମ୍ଭ କୃପାବ୍ଧିକ କୁମ୍ଭସୁତ ହୋଇ ମୋ କଷଣ,
ଟିକାଏ ନରଖି ପାନକଲ ନିକ ତେଣୁ ଗୁହାରି ନଶୁଣ ହେ ।
ଟଳିଗଲେ ଏ ମହିମା, ଟେକ ଯିବ କି ଦୁଃଖ-ଗାରିମା ହେ । ୧୧ ।

ଠାକୁର ବୋଲାଇ ଦୀନଜନ ପାଇଁ ଯେବେ ସୁପକ୍ଷ ନୋହିବ,
ଠେକେ ମୋର ପ୍ରାଣ ଗଲେ ପ୍ରଭୁ ଜାଣ ନିଶ୍ଚେ ଅକୀର୍ତ୍ତି ପାଇବ ହେ ।
ଠାବ ନାହିଁ ମହାବାହୁ । ଠଉରିବ ମୁଁ କେମନ୍ତେ ଆଉ ହେ । ୧୨ ।

ଡେରି କର୍ଣ୍ଣପଥ ଶୁଣ ମୋ ଆରତ ଆହେ ବାଞ୍ଛା-କଳ୍ପତରୁ,
ଡମ୍ବରୁଧାରଣ ବିନୁ କେ ତାରଣ କରିବ ଶୋକସାଗରୁ ହେ ।
ଡାକ ଶୁଣ ମୋ ଈଶ୍ୱର, ଡଙ୍କନାଶନବାନା ତୁମ୍ଭର ହେ ।୧୩।

ଢାଳି କୃପାଜଳ ସନ୍ତାପ-ଅନଳ ଲିଭାଅ ଭୃତ୍ୟ ଜନର,
ଢକ୍କା ବାଜିକରି ଯା ମହିମା ପୂରି ରହିଅଛି ବ୍ରହ୍ମାଣ୍ଡର ହେ ।
ଢାଳେ ନଶୁଣ ମୋ ଗିର, ଢାଙ୍କିଲ କି କର୍ଣ୍ଣରେ ପଥର ହେ ।୧୪।

ଅଶରଣଜନଠାରେ କୃପାବାନ ହୋଇଲେ ନିଷ୍ଠୁର ମତି,
ଅଖିଳ ବ୍ରହ୍ମାଣ୍ଡେ କେହି ଅବା ଖଣ୍ଡେ ହରିବ ମୋର ଦୁର୍ଗତି ହେ ।
ଆହେ ଅମରନାୟକ ! ଅଶରଣ ଜନେ ଦୟା ରଖ ହେ ।୧୫।

ତଳେ କୃପାନେତ୍ରେ ଚାହିଁ ଦେଲେ ମୋତେ ନାଶ ହେବ ଏ ଦୁର୍ଗତି,
ତୃତୀୟନୟନ କଟାକ୍ଷେ ଦହନ ଯେହ୍ନେ ହେଲା ରତିପତି ହେ ।
ତୁମ୍ଭ ବିନୁ ପଶୁପତି ! ତାରିବାକୁ ନାହିଁ ଅନ୍ୟ ଗତି ହେ ।୧୬।

ଥାଉଁ ପ୍ରଭୁପଣ କପାଁଇ ନ ଶୁଣ ଏ ଦୀନଜନ ଗୁହାରି,
ଥାବର ଜଙ୍ଗମ ସମସ୍ତେ କରମ ରହିବେ ଯେବେ ଆଦରି ହେ ।
ଥୂଥ ବାନାକୁ ଫିଟାଇ, ଅରେ ନ କହିବେ ଦୁଃଖ କେହି ହେ ।୧୭।

ଦେବନଦୀତୀରେ ଅଭିରଘାଟରେ ଚିନ୍ତା କଲେ ଦ୍ୱିଜବାମା,
ଦୁଃସହ ଗରଳ ହୋଇଗଲା ଜଳ ରହିଛି ତୁମ୍ଭ ଗାରିମା ହେ,
ଆହେ ଦୁରିତନାଶନ, ଦିଅ ଭକ୍ତକୁ ଅଭୟଦାନ ହେ ।୧୮।

ଧନପତି ଯା'ର ସେବଣ ପସୁର ପାଇଲେ ଅଳକାପୁର,
ଧର୍ମବ୍ରଜ ଭୟ ପାଇ ମାର୍କଣ୍ଡେୟ ଯାହାକୁ ସେବି ଅମର ହେ ।
ଧ୍ୟାଇ ସେ ପ୍ରଭୁ ଚରଣ, ଧନ୍ଦା ନ ଗଲା ବଡ଼ ଦୂଷଣ ହେ ।୧୯।

ନିରଜ ଚରଣଯୁଗଳେ ଶରଣ ପଶିଛୁ ଅତି ଆରତି,
ନିବାରି ଏ ଦୁଃଖ ଆହେ ପଞ୍ଚମୁଖ ଉଦ୍ଧରି ଧରି ହିଟତି ହେ ।
ନୁହ ନିଷ୍ଠୁର ହୃଦୟ, ନିନ୍ଦା ପାଇବଟି ମୃତ୍ୟୁଞ୍ଜୟ ହେ ।୨୦।

ପାଇ ମହାଖେଦ ସର୍ବ ସୁରବୃନ୍ଦ ଶରଣ ଗଲେ ତୁମ୍ଭଙ୍କୁ,
ପ୍ରବଳ ତ୍ରିପୁର ଦାନବ ସଂହାରି କରି ରଖିଲ ତାଙ୍କୁ ହେ ।
ପାନ କରି କାଳକୂଟ, ପ୍ରଭୁପଣକୁ କଲ ପ୍ରକଟ ହେ ।୨୧।

ଫୁଲଧନୁ-ଅରି ଶୁଣ ମୋ ଗୁହାରି ସତ୍ୟ ଲଙ୍ଘିଲେ ଆପଣେ,
ଫେରିଯିବ ସୃଷ୍ଟି ଆଉ ଜଳବୃଷ୍ଟି ନ କରିବେ ମେଘମାନେ ହେ ।
ଫାଟିଯିବଟି ଏ ଧରା, ଫଣୀରାଜ ପାଇବେଟି ଖରା ହେ ।୨୨।

ବିପତ୍ତିସାଗରେ ପଡ଼ି ନିରନ୍ତରେ ଭାସିଯାଉଛୁ ଗୋସାଇଁ,
ତାରେ କୃପା-ନାବ ଲଗାଅ ହେ ଶିବ, ପାରକର କୂଳେ ନେଇ ହେ ।
ଆହେ ବିଶାଳସ୍ଥବାସି ! ବଳିଗଲାଣି ସମସ୍ତ ଆସି ହେ ।୨୩।

ଭଜି ଭଜି ଯା'ର ମହିମା ଅପାର ନ ପାଇଲେ ସରସ୍ୱତୀ,
ଭ୍ରାନ୍ତ କରି ମନ ଚତୁରବଦନ ଗଣନା କରିନାହାନ୍ତି ହେ ।
ଭଜ ନ କଲେ ଅନର୍ଥ, ଭଜିଥିବ କେତେ ପୁରୁଷାର୍ଥ ହେ ।୨୪।

ମାନସକମଳ ମନ୍ଥୁଛି ପ୍ରବଳ ହୋଇ ଦୁରିତ-କୁଞ୍ଜର,
ମହିମାକେଶରୀ ବେଗେ ଆସିକରି ତାହାକୁ କର ନିବାର ହେ ।
ମହାଭୟ ଯାଉ ନାଶ, ମନ୍ତ୍ର ହେଉ ମୋର ପରିତୋଷ ହେ ।୨୫।

ଯମୁନାତୀରରେ ତୁମ୍ଭଙ୍କୁ ଭକ୍ତିରେ ପୂଜାକଲେ ଗୋପକନ୍ୟା,
ଯଶୋଦାକୁମର ହେବେ ବୋଲି ବର ମନରେ କରି କାମନା ହେ ।
ଜାଣି ତାଙ୍କ ଭକ୍ତିଭାବ, ଜଗମୋହନଙ୍କୁ ଦେଲ ଶିବ ହେ ।୨୬।

ରକ୍ଷାକର ମହାସଂକଟରୁ ସାହା ହୋଇ କରି ଆହେ ଶମ୍ଭୁ !
ରସା ମଧ୍ୟେ କେହୁ ଅଛୁ ମହାବାହୁ ତୁମ୍ଭ ପରି ଆଉ ପ୍ରଭୁ ହେ ।
ଅହେ ରଉପତିଭକ୍ତ ! ରାଢ଼ ପାପ ବଢ଼ାଉଛୁ ବପୁ ହେ ।୨୭।

ଲୀଳା ଏ ସଂସାର ହୋଇଛି ଯାହାର ନିଧି ଅଙ୍ଗ ଯା'ର ଜାତ,
ଲମ୍ବୋଦର ଯା'ର ଅନନ୍ତ କୁମର ଅଗ୍ର ପୂଜା ହୋଏ ଖ୍ୟାତ ହେ ।
ଲକ୍ଷ୍ୟ ଥାଉଁ ତାଙ୍କ ପଦ, ଲଭୁଅଛୁ ମୁଁ ଅତ୍ୟନ୍ତ ଖେଦ ହେ ।୨୮।

ବିଦ୍ରୁମ ରାଜନ ନାମ ସୁରସେନ ପଶିଲେ ଆସି ଶରଣ,
ବିଶେଷ ବ୍ୟାଧିକ ନାଶିଲ ପିନାକ ରଖିଲ ତା ବଡ଼ପଣ ହେ ।
ବାରେ ହୁଅ ବଜ୍ରସେନ୍ଧା, ବହିଅଛ ଭସ୍ମାଙ୍କୁର ବାନା ହେ ।୨୯।

ସୃଷ୍ଟି ସ୍ଥିତି ନାଶ ଯାହାର ଆଦେଶ ମାତ୍ରେ ହେଉଛି ଘଟଣା,
ସେ ପ୍ରଭୁ କରୁଣା କଲେ ନିକ ଉଣା ନୋହିବ ମୋର ବେଦନା ହେ ।
ସେହି କଥାକୁ ସୁମରି, ସହୁନାହିଁ ଦିନ ଝୁରି ଝୁରି ହେ ।୩୦।

ସଂସାରରେ କେତେ ପାତକୀ ସାକ୍ଷାତେ କରିଅଛ ନିସ୍ତାରଣ,
ସେହି ପ୍ରଭୁ ହୋଇ ମୋଠାରେ କପାଇଁ ହେଉଛ ଏତେ ଦାରୁଣ ହେ ।
ଆହେ ସୋମ-ସୂର୍ଯ୍ୟ-ନେତ୍ର, ଶୁଣି ଲଗୁଛି ବଡ଼ ବିଚିତ୍ର ହେ ।୩୧।

ଶରପେଞ୍ଜରବାନାକୁ ତୁମ୍ଭର ଶୁଣି କରିଛି ଭରସା,
ଶଙ୍କର ଶରଣ ଥାଉଁ ଗଲେ ପ୍ରାଣ ହେବ ବଡ଼ ଲୋକହସା ହେ ।
ଶୀର୍ଣ୍ଣ ହେଉଛି ମୋ ତନୁ, ଶୋକ ବଢ଼ୁଅଛି ଦିନୁ ଦିନୁ ହେ ।୩୨।

ହେଲିଣି ଅନାଥ ଆହେ ପଞ୍ଚନାଥ ବସୁରବା ହେଉ ଚଢେ,
ହସ୍ତପାଦ ଗତ ଆଉଁ ଆଉଁ ଅତ ସଂକଟ ପଡ଼ିଲା ମୋତେ ହେ ।
ହତ କର ମୋର ବ୍ୟାଧି, ହେଳା ନ କର କରୁଣାନିଧି ହେ ।୩୩।

କ୍ଷେତ୍ରଙ୍କ ଉତ୍ତମ ବରାଳସ୍ଥ ନାମ ପୁର ମଧ୍ୟେ ଅଛ ରହି,
ଖ୍ୟାତ କଳିକାଳେ ହୋଇଛ ଉତ୍କଳେ ବାଲୁଙ୍କା ଲିଙ୍ଗ ବୋଲାଇ ହେ ।
ଷଣେ ବିଳମ୍ବ ନ କର, ଖେଦନାଶନେ କୃତ୍ତିବାସର ହେ ।୩୪।

---

ଲେଖକ : କୃଷ୍ଣ କର

## ଉଦ୍ଧବ ଚଉତିଶା

( ରାଗ—କଲ୍ୟାଣ-ଆହାରୀ )

କନ୍ତୁନେତ୍ରୀ ହର ହରିହୃତେ ଘେରି କହନ୍ତି କୋମଳ ବଚନ,
କୃଷ୍ଣ ଗଲାଦିନୁ କୃଷ୍ଣପକ୍ଷ ହର ପରାଏ ହେଲା ଅପଘନ.
ଉଦ୍ଧବ, କହିବ କୁବୁଜାକାନ୍ତରେ,
କସ୍ତୁ-ତପୁପତି-ପତି-ଅଶମ୍ବୁଖେ ଦେଇ ରହିଲେ ମଧୁପୁରେ ।୧।

ଖଳ ସ୍ତମୁଖେ ତରଣି ପରାପ୍ତେ ଦର୍ପକ-ଦର୍ପରେ ପକାଇ,
ଝଣ୍ଟି ସବୁ ସୁଖ ମଣ୍ଡି ଦେଇ ଦୁଃଖ ରହିଲେ ମଥୁରାରେ ଯାଇ,
ଉଦ୍ଧବ, ଖାଇ ମରନ୍ତୁ ବା ଅମୃତ,
ଖୁଆଇ ଅମୃତ ବଦନୁଁ ଅମୃତ-ଦୋଷ ନାଶିଛନ୍ତି ଅଚ୍ୟୁତ ।୨।

ଗୋପେ ଅଷ୍ଟାପଦମାନ ରଖିଥିଲୁ ଦାମ କରି ଅଷ୍ଟାପଦର,
ଗଲାକୁ ଭଣ୍ଟାବର୍ତ୍ତିର ପ୍ରାପ୍ତେ କଲେ କହିବୁ ଯାଇ କା ଆଗର,
ଉଦ୍ଧବ, ଗୋଧାରେ ଏ ଅସମ୍ଭାବିତ,
ଗଣ୍ଡି ଗଙ୍ଗଭଦ୍ର କମଳ ହୋଇଲା ବୋଇଲେ କେ କରିବ ସତ ।୩।

---

(୧) ହର—ଯୁବତୀ । ହରି—କୃଷ୍ଣ । ହର—ଚନ୍ଦ୍ର । କସ୍ତୁରପୁ··ମୁଖେ—କାମକବଳରେ; ସଂହାରକାରୀ ପାର୍ବତୀପତିଙ୍କ ଶତ୍ରୁ ।
(୨) ତରଣୀ—ସୂର୍ଯ୍ୟ । (୩) ଅଷ୍ଟାପଦ—ସ୍ତ୍ରୀ, ସୁନା, ସାପ । ଗୋଧା—ପୃଥିବୀ ।
ଗଙ୍ଗଭଦ୍ର—ସୁନା । କମଳ—ତମ୍ବା ।

ଘନାଘନ ସାରଙ୍ଗରେ ସାରଙ୍ଗକୁ ମୁଞ୍ଚନ୍ତେ ସାରଙ୍ଗ ଆନନ୍ଦ,
ଘନଶ୍ୟାମ ଗୃହେଁ ପାର୍ବତୀଙ୍କ ଚିତ୍ତ କେମନ୍ତ ହୁଅଇ ପ୍ରମୋଦ,
ଉଦ୍ଧବ, ଘରବରକୁ ତେଜ୍ୟା କରି,
ଘନଶ୍ୟାମ ମୁଖ ଅନାଇ ଆନନ୍ଦେ ଦିନ ବଞ୍ଚୁଥିଲୁ ଆଶ୍ଳେଷି । ୪ ।

ଉତ୍ତର କୁବେରବନ୍ଧୁକୁ ନିନ୍ଦା କରେ କୃଷ୍ଣ ଥିବାକାଳେ ଏ ପୁର,
ଉଆଁସ ପଙ୍କିଲ ପ୍ରାୟେ ଏବେ ହେଲା ଉଦେ ନୁହଁନ୍ତେ ଶଶଧର,
ଉଦ୍ଧବ, ଉମାକାନ୍ତ-ଶତ୍ରୁ-ପିଅର,
ଆସିବୁ ବୋଲି ନିୟମ କରି ଗଲେ ସାକ୍ଷୀ କରାଇ ଦିବାକର । ୫ ।

ଚନ୍ଦ୍ରାମଣି ଚନ୍ଦ୍ରାମଣିକି ଦେଇଣ ଚତୁରଙ୍କ ସଙ୍ଗେ ରହିଲେ,
ଚୁରି ଦିନରେ ଆସିବୁ ବୋଲି କହି କୁମ୍ଭସୁତ ପ୍ରାୟେ ନଇଲେ,
ଉଦ୍ଧବ, ଚନ୍ଦ୍ରବଦନଙ୍କୁ କହିବ,
ଚନ୍ଦ୍ରାମଣି ନେଇ ଚନ୍ଦ୍ରାମଣି ଦେଲେ ଚୁରିଯୁଗେ କଥା ରହିବ । ୬ ।

ଛୁଡ଼ିଗଲାଦିନୁ ପଙ୍କିଲ ବସନ ନିଧବନ କାଳ ହୋଇଲା,
ଛୁଟକ ପଙ୍କିଲ-ଧ୍ୱଜର-ପିଅର-ଅରାତି ପଙ୍କିଲେ ଦହିଲା,
ଉଦ୍ଧବ, ଛଇଲ ନାଗର ଦଳିଲ,
ଛୁଟକ ଅମ୍ବର ଶୀତଳ କରାଅ ଅଣାଇ ମଦନଗୋପାଳ । ୭ ।

ଜଳଜ-ଆନନୀ ବୋଲେ ତାହା ଶୁଣି ଶୁଣ ହେ ଶ୍ୱେକ୍ଳୁର-ତନୁଜ,
ଜୀବନ ଆମ୍ଭର ଘାଣ୍ଟି ହେଉଅଛୁ ତପ୍ତଜଳେ ଯେସନ୍ତେ ଅଣ୍ଡଜ,
ଉଦ୍ଧବ, ଯାବକବସ୍ତିନେ ଚରଣ,
ଜାନକୀରେ ଚନ୍ଦ୍ରକାନ୍ତ କାନ୍ତ ଚନ୍ଦ୍ରବିନେ ଯେସନ୍ତେ ମଳିନ । ୮ ।

ଝାଡ଼ ପରାଏ ଦବସ୍ଥିତି ହୋଇଲା ଝଷକେତୁ କେତୁ ହୋଇଲା,
ଝଳାଇ ମନ ମଥୁରାନାଥଙ୍କର ସଙ୍ଗେ ରହିଲେ ନନ୍ଦବଳା,
ଉଦ୍ଧବ, ଝଡ଼ସାରଙ୍ଗ ମନ୍ଦ ଘରେ,
ଝଷକେତୁ-ତାତ ଖୋପରେ ସେପରି ଥିଲେ ରହିଲେ ସେ ନଗରେ । ୯ ।

---

(୪) ସାରଙ୍ଗ—ପୃଥିବୀ, ଜଳ, ଚାତକ । ପାର୍ବତୀ—ପୃଥିବୀ ।
(୫) ଉତ୍ତରକୁବେରବନ୍ଧୁ—ଅଳକାପୁରର ଶୋଭା । ଉମାକାନ୍ତ-ଶତ୍ରୁ-ପିଅର—କୃଷ୍ଣ ।
(୬) କୁମ୍ଭସୁତ—ଅଗସ୍ତି ।
(୭) ପଙ୍କିଲବସନ—ଭ୍ରମର ପରି କୃଷ୍ଣ । ପଙ୍କିଲ…ଅରାତି—ମୟୂରବାହନ କାର୍ତ୍ତିକଙ୍କ ପିତାଙ୍କ ଶତ୍ରୁ—କନ୍ଦର୍ପ । ପଙ୍କିଲ—ଅଗ୍ନି ।
(୮) ଶ୍ୱେକୁର-ତନୁଜ—ଉଦ୍ଧବ । ଜାନକୀ—ଯମୁନା । ଚନ୍ଦ୍ରକାନ୍ତ—କଇଁଫୁଲ ।
(୯) ଦବସିତ—ଗୃହ । କେତୁ—ନାଶକ । ଝଡ଼ସାରଙ୍ଗ—କୋକିଳ । ମନ୍ଦ—କାକ ।

ଞଷ୍ଟସ୍ୱ ଆସିବୁ ବୋଲି କହିଯାଇ ଗୋପକୁ ଲେଉଟି ନଇଲେ,
ଞରିଶାରେ ଆଶା ଦେଖାଇଣ ମୃଗତୃଷ୍ଣା ଜଳ ପ୍ରାୟେ ମାଇଲେ,
ଉଦ୍ଧବ, ନାସ୍ତିବାସବ୍ୟେସ ଆଗରେ,
ଞର୍ତ୍ତିସ୍ୱ କରି କହିବ ଗୋପୀ ମଲେ ହତ୍ୟା ହେବ ତାଙ୍କ ଉପରେ । ୧୦ ।

ଟେକରେ ଦମ୍ଭୋଳିଧାରୀ ଗଲେ ହାରି ଗୋପାଳ ହାରିଲେ ଗୋପରେ,
ଟେକି କରି ନାଗ ନାଗର ଧଇଲେ ଶୋରୁ ଗୋପାଳଙ୍କ ହସ୍ତରେ,
ଉଦ୍ଧବ, ଟେକିଣ କଟକ ଉପରେ,
ଟାହୁଟାପରି କରି ତାଙ୍କୁ ବସାଇ ନର୍ମଠ ଜେଉ ଆନନ୍ଦରେ । ୧୧ ।

ଠକ ନୁହେଁ ଏ ତ କହୁଅଛୁଁ ସତ ଧାଉମରି ଆଗେ କହିବ,
ଠକ କୃଷ୍ଣଙ୍କୁ କାନ୍ଧେ ନେଲେ ଯାହାକୁ ସେ କହିଅଛନ୍ତି ବୋଲିବ,
ଉଦ୍ଧବ, ଠିକ କଥା ଏ ଗୋପୀଙ୍କର,
ଠାକୁରଙ୍କୁ ଆଣ ଗୋପକୁ ଗୋପୀଏ କହନ୍ତି କହେ କୃଷ୍ଣ କହି । ୧୨ ।

ଡେରିଆଉ ଶ୍ରୁତି ସଙ୍କେତ-ସ୍ୱନକୁ ଡହକ ହେମାଙ୍ଗ ଯାହାର,
ଡର ତେଜ ଗୋପାଳରେ ଗୋପାଳରେ ଉଶ୍ୱ ହେଉ ନୀପମୂଳର,
ଉଦ୍ଧବ, ଡାକ ମୁରଲୀରେ ଶ୍ରୀଧର,
ଡରିଲ ଆମ୍ଭଙ୍କୁ କହି ନାନା ଧର୍ମ କରି ନପାରିଲେ ଅନ୍ତର । ୧୩ ।

ଢାଙ୍କୁଣି ଢାଙ୍କିଲ ଉଛା କୁମ୍ଭ ପ୍ରାୟେ ହେଲ ଗୋପୀଙ୍କ ଅପଘନ,
ଢମ ନୁହେଁ କଷ୍ଟ ଭକ୍ଷିଲ କପିଥ ପରାୟେ ଭିତରରେ ଶୂନ୍ୟ,
ଉଦ୍ଧବ, ଢମାଲିଆ ଆଗେ କହିବ,
ଢଳ ନଯ ଇ ଦେହ ଏକା ରହିଛୁ ବାହାରକୁ ଦଣ୍ଡେ ଆରମ୍ଭ । ୧୪ ।

ଅଣଆସ୍ଥିର ଗୋପୀଙ୍କର ଜୀବନ କୃଷ୍ଣଚନ୍ଦ୍ରଙ୍କୁ କହି ଯାଇ,
ଆଶା ଦେଖାଇ ନିରାଶ କରି ଆସି ମଥୁରା ରହିଲେ ମାଧୋଇ,
ଉଦ୍ଧବ, ଆଣି ଭେଟାଅ ଯଦୁବ୍ରଏ
ଅନଳ-ଚଳ୍ଲା ଦହୁଅଛୁ ବିରହ ଲଭିଅ ଭଗୀରଥ ପ୍ରାୟେ । ୧୫ ।

---

(୧୧) ଦମ୍ଭୋଳିଧାରୀ—ଇନ୍ଦ୍ର । ନାଗ—ପର୍ବତ । କଟକ—କର୍ଣ୍ଣଭୂଷଣ, ନିତମ୍ବ । ନର୍ମଠ—ଚୁମ୍ବନ ।

(୧୩) ଗୋପାଳ—ଗରୁଡ଼, ଗାଈ ।

ତରଳ ବାଙ୍କସୁହାଣୀ ତାହାଙ୍କର ତଳେ ପଡ଼ିଗଲେ ଅମ୍ବର,
ତିଳୋତ୍ତମା ବୋଲେ ଶୁଣ କୃଷ୍ଣସ୍ୱର କୃଷ୍ଣ ପରଶେ ଘରବର,
ଉଦ୍ଧବ, ତ୍ରିଭଙ୍ଗୀ ଛନ୍ଦେ ହୋଇ ଉଭା,
ତ୍ରିଭୁବନ-ଲୋଭା ମୋହନ ମୁରଲୀ ଧରି ଦିଶନ୍ତି କେଡ଼େ ଶୋଭା । ୧୬ ।

ଥର ଥର ହୋଇ ଥରେ ଅବୟବ ଅଶ୍ରୁ ଲୁହଇ ପଞ୍ଚମନ,
ଅଶ୍ରୁ ଲୁହେଁ ରସ ରସରସନଦୀ ବୁଡ଼ାଇ ଦେଲାଣି ଚେତନ,
ଉଦ୍ଧବ, ଥିଲା ଖଣ୍ଡିତପ ଆମ୍ଭର,
ସ୍ଥାଣୁ-ପରିପନ୍ଥୀ ପରିପନ୍ଥୀ ହେଲା ତେଣୁ କୃଷ୍ଣ କଲେ ଅନ୍ତର । ୧୭ ।

ଦମ୍ଭ ରଖିଅଛୁଁ ତୁମ୍ଭ ବାଣୀ ଲେଉଟିବାପାଏ ଆମ୍ଭ ଆଗର,
ଦଗଦ୍ଧି ଗୁଣପାନେ ନିଷ୍ଟେ ମରିବୁଁ ନ ଆସିଲେ ଭାର୍ଗବୀ-ବର,
ଉଦ୍ଧବ, ଦୀନବନ୍ଧୁ ନାମ ଯାହାର,
ଦରିଦ୍ରଙ୍କ ଧନ ଦୁଃଖୀର ଜୀବନ ଦ୍ୱିସପ୍ତ ଲୋକଙ୍କ ଠାକୁର । ୧୮ ।

ଧଇର୍ଯ୍ୟକୁ ଧରି ଲୁହଇ ଆମ୍ଭର ନେଲା ଦିନୁଁ ତାଙ୍କୁ ଅକ୍ରୂର,
ଧନ୍ୟ ମଧୁପୁର ନାରୀମାନଙ୍କର ପୁଣ୍ୟ ତପ ଥିଲା ପୂର୍ବର,
ଉଦ୍ଧବ, ଧିକ ଧିକ କର୍ମ ଆମ୍ଭର,
ଧରି ପଞ୍ଚଗଣ୍ଡେ ଗଣ୍ଡେ ଚୁମ୍ବ ଦେଉଁ କିଶୋରେ ଧାତା କଲା ଦୂର । ୧୯ ।

ନାରୀଚଉରସ୍ତୋଷ ଯିବାରୁ ମଥୁରା ଆନନ୍ଦ ସୁଷମା ହିଁ ଗଲା,
ନିରଶେ ଲକ୍ଷଣା ପ୍ରାଣ୍ଟେ ଝୁରି ଝୁରି କଙ୍କଣ ନୟନେ ରହିଲା,
ଉଦ୍ଧବ, ନଟବର ଆଗରେ କହ,
ନ ଆସିଲେ କୃଷ୍ଣ ତାଙ୍କଠାରୁ ପ୍ରେମଛଡ଼ା ମନ୍ତ୍ରକୁ ଆଣିଦିଅ । ୨୦ ।

ପ୍ରେମେ ଗଦଗଦ ଉଦ୍ଧବ ଆନନ୍ଦ ବୋଲନ୍ତି ଧନ୍ୟ ଗୋପନାରୀ,
ପ୍ରୀତିଭାବରେ କୃଷ୍ଣଙ୍କୁ କିଣିଛନ୍ତି ତେଣୁ ପେଷିଲେ ମୋତେ ହରି,
ଉଦ୍ଧବ, ପଦ୍ମିନୀମାନଙ୍କୁ କହିଲେ,
ପତିତ-ପାବନ-ବାନାକୁ ବୃଥାଏ ନିନ୍ଦା କରୁଅଛ ବୋଇଲେ । ୨୧ ।

---

(୧୭) ସ୍ଥାଣୁ-ପରିପନ୍ଥୀ—କାମ । ରସ—ଦେହ । ରସରସ—କାମ ।
(୧୮) ଦଗଦ୍ଧି ଗୁଣପାନେ—ବିଷପାନରେ । ଭାର୍ଗବୀ—ଲକ୍ଷ୍ମୀ ।
(୨୦) କଙ୍କଣ—ଜଳ ।

ଫଳାଶନ ଆନନ ପ୍ରାପ୍ତେ ନମିଣ ତା ମଧ୍ୟେ ସାରଙ୍ଗ-ଆସନ
ଫେଡ଼ି କହୁଅଛୁ ସେ ବ୍ରହ୍ମରେ ଚିତ୍ତ ଦେଲେ ବ୍ରହ୍ମ ପାଇ ଦର୍ଶନ,
ଉଦ୍ଧବ, ଫିଟିଛୁ କବାଟ ବୋଲନ୍ତି,
ଫେରଇ ସଦାଗତ ଦଶଦୁଆରେ ପଶ ବାହାରେ ବ୍ରହ୍ମଛନ୍ତି ।୧୧।

ବୋଲନ୍ତି ଗୋପୀ ଶୁଣ ହେ କୃଷ୍ଣସ୍ବର ବ୍ରହ୍ମଜ୍ଞାନ ଅଟଇ ସତ,
ବନାଶଇ କ୍ଷୀର କ୍ଷୀରଜ ପଡ଼ିଲେ ତେମନ୍ତ ହେଲା ଆମ୍ଭ ଚିତ୍ତ,
ଉଦ୍ଧବ, ବ୍ରହ୍ମଜ୍ଞାନୀଙ୍କି ତା ବୁଝାଅ,
ବନା ଅଶ୍ରଗ୍ୟେ ଏ କଥା ଶୁଣା ନୁହେଁ ଆଉ ଆମ୍ଭ ଆଗେ ନକହ ।୧୩

ଭଜନ୍ତି ବ୍ରହ୍ମଙ୍କୁ ଯେଉଁ ପ୍ରାଣୀମାନେ ତାହାଙ୍କ ଆଗେ କହ ଯାଇ,
ସବ-ପ୍ରେମଭକ୍ତି-ବହ୍ନିନେ ଆମ୍ଭର ମନକୁ ଆନ ନ ରୁଚଇ,
ଉଦ୍ଧବ, ଭକ୍ତିପ୍ରେମ ଯାହା ହୃଦର,
ଭଜେ ଚିନ୍ତାମଣି ପ୍ରେମଭକ୍ତିରେ ଯେ ସେ ତରେ କହେ କୃଷ୍ଣ କର ।୧୪।

ମନେ ବ୍ରହ୍ମ ସ୍ତବ କହୁଅଛ ଯାହା କଉଶିକ ତା ଅପଘନ,
ମଧୁର ନୁହଇ ପ୍ରେମ-ଭକ୍ତି ଯହିଁ କେତେ କାଳେ ମିଳେ ଅସନ,
ଉଦ୍ଧବ, ମହତ ଜାତହବ ଜ୍ଞାନ,
ମରୁଅଛ ଯାହା ଆନରେ ଭ୍ରମିଣ ପ୍ରେମଭକ୍ତିରେ ଡଅ ମନ ।୧୫।

ଯା' ନାମ ମୃକଣ୍ଡ-ପସର ଅଟଇ କି କହବୁ ତୁମ୍ଭ ଆଗରେ,
ଯାଇ ମଥୁରେ ଆନନ୍ଦେ ରହିଲେ ଘଣ୍ଟୁଆର ନାରୀ ସଙ୍ଗରେ,
ଉଦ୍ଧବ, ଯଦୁନାଥ ବଡ଼ ଭଙ୍ଗିଆ,
ଯାହାକୁ ଯେ ଦ୍ରବ୍ୟ ରୁଚକ ଲାଗଇ ସେ କାହିଁ ତେଜିପାରେ ତାହା ? ।୧୬।

ରଙ୍ଗିଣୀ ପଦ୍ମ ମାଳତୀ ଛୁଣଥନା ତହିଁ ବସିଥାଇ ଭ୍ରମର,
ରସପାନ କରି ବାଜଦନ୍ତ ଫୁଲେ ଯାଇ ବସଇ ମଧୁକର,
ଉଦ୍ଧବ, ରସିକ ଯଦୁନାଥ ଗତ,
ରଜନୀକେ ଯୁଗ ଶିଖିଛୁ ତା'ଠାରୁ ଷୋଳସହ ଗୋପ ଯୁବତୀ ।୧୭।

---

(୧୧) ଫଳାଶନ-ଆନନ—ଶୁକମୁଖ । ସଦାଗତ—ପବନ । (୧୩) କ୍ଷୀରଜ—ଦଧି ।
(୧୫) କଉଶିକ—ସ୍ତବ । (୧୬) ଘଣ୍ଟୁଆର—ଗନ୍ଧମାଳ । (୧୭) ବାଜଦନ୍ତ—ବାସଙ୍ଗ ।

ଲଭେ ମାଧବ ତାଙ୍କର ଲୀଳାମାନ ନ ଗଲାକ ଆମ୍ଭ ମନରୁ,
ଲୂତାସୂତା ପ୍ରାୟେ ଲଗିଛୁ ହୃଦରେ ବ୍ରଜରେ ଅଛୁ ଯେତେ ଲୀରୁ,
ଉଦ୍ଧବ, ଲୀଳାରେ କରି କୁଣ୍ଟବୁଦ୍ଧି,
ଲଗାଇ ମଥୁରା ନାରୀ ରଖିଛନ୍ତି ଭେଳକ ମନ୍ତ୍ର ମଉଷଧି । ୨୮ ।

ବାଳୀମାନଙ୍କ ପ୍ରେମଭକ୍ତି ଦେଖିଣ ଉଦ୍ଧବ ପ୍ରେମେ ଗଦଗଦ,
ବନ୍ଦନ ଯାଇଣ ନମସ୍କାର କଲେ ଧରି ଗୋପୀଙ୍କ ପଦ୍ମପାଦ,
ଉଦ୍ଧବ, ବୋଲନ୍ତି ନାରୀ ହେଲ ବାଇ,
ବିଷ୍ଣୁଙ୍କ ଭକତ ଜାଣ ନାନା ଶାସ୍ତ୍ର ଏ କର୍ମ ତୁମ୍ଭ ନ ଯୋଗାଇ । ୨୯ ।

ଶୁଣ ବିଷ୍ଣୁପ୍ରିୟେ ଉଦ୍ଧବ ବୋଲନ୍ତି ତୁମ୍ଭଙ୍କ ସମାନ ମୁଁ କାହିଁ,
ସଂସାରେ କୋଟି ତପୀ ସମ ନୋହିବେ କୃଷ୍ଣର ଅଷ୍ଟ ଅଙ୍ଗଦେହୀ,
ଉଦ୍ଧବ, ଶ୍ରଦ୍ଧାରେ ଶିରେ କର ଦେଇ,
ଶ୍ରୀକୃଷ୍ଣ ନାମ ତୁଣ୍ଡେ ଗାଇ ନାଚଣ ପୁଣି ଗୋପୀପାଦେ ପଡ଼ଇ । ୩୦ ।

ସଖୀମାନେ ଉଠି ଉଦ୍ଧବଙ୍କୁ ନେଇ ଆସନ ପରେ ବସାଇଲେ,
ଶ୍ରୀକୃଷ୍ଣ ପାଶକୁ ଚଉତିଶା ଲେଖିଣ ଉଦ୍ଧବେ ରତ୍ନମାଳା ଦେଲେ,
ଉଦ୍ଧବ, ଶିରେ ଉଷ୍ଣିଷ ଲଗାଇଲେ,
ସଖୀମାନେ କୃଷ୍ଣ ଜାଣିବାକୁ ହରି ହରି ମୁଦ ପରେ ରଖିଲେ । ୩୧ ।

ସଖୀମାନଙ୍କ ଆଜ୍ଞା ଧରି ଉଦ୍ଧବ ମଥୁରା ପ୍ରବେଶ ହୋଇଲେ
ଶ୍ରୀକୃଷ୍ଣ ପାଶରେ ପ୍ରବେଶ ହୋଇଣ ଶିରରେ ବେନି କର ଦେଲେ,
ଉଦ୍ଧବ, ଶୁଣ ଜଗବନ୍ଧୁ ବୋଇଲେ,
ସଖୀମାନଙ୍କର ଉଦନ୍ତ ଆଣିଛୁ ବୋଲି ଚଉତିଶା ହସ୍ତେ ଦେଲେ । ୩୨ ।

ହସ୍ତରେ ଚଉତିଶା ଧରି ଦୀନବନ୍ଧୁ ମୁଦ ଫିଟାଇ ପାଠ କଲେ,
ହରି ହରି ଶବଦକୁ ଅର୍ଥ କରି ଭାବେ ଗଦଗଦ ହୋଇଲେ,
ହରଷ, ହେଲେ ବସୁନ୍ଧରେ ବରଷ,
ହରି-ଭାବ ଭାବ ସନ୍ଥ ଜନମାନେ ହୃଦରୁ ପାତକ ବିନାଶ । ୩୩ ।

---

(୨୮) ଲୀରୁ—ନାରୀ ।
(୩୧) ଉଷ୍ଣିଷ—ଟଠ । ହରି—ସର୍ପ, ଶଙ୍କର, ମର୍କଟ ।

କ୍ଷମା ଦୟା ବନ୍ଧୁ ଶରୀର ଯେ ଧରେ ଅବନୀରେ ଦେହ ବନ୍ଧନ,
ଖ୍ୟାତ ହୋଇଅଛୁ ପୁରାଣେ ବରନ୍ତ ଲେଖିଛନ୍ତି ପଣ୍ଡ ବୋଲିଣ,
ସୁଜନେ, କ୍ଷମାକର ଦୋଷ ମୋହର,
ଷିତ-ନନ୍ଦନୀ କୋଦଣ୍ଡ ସ୍ତୁପପାଣି କୃଷ୍ଣ କରନ୍ତୁ ଭବୁଁ ତାର । ୩୪ ।

---

ଲେଖକ : କୃଷ୍ଣ ଦାସ

## ମିତଣୀ ଦାଣ୍ଡଧିଆ

କହଇ ସୁନ୍ଦରୀ ଯେ ଶୁଣ ପ୍ରାଣସଖି
କଦମ୍ବ ବୃକ୍ଷ ଗୋଟି ହୁଳୁଚେ ଅଛୁ ରହି ।
କମଳ ପୁଷ୍ପ ତହିଁ ଫୁଟଇ ନିରନ୍ତର
କଳା ଭ୍ରମର କ ଚୁମ୍ବଇ ଗୋ ମିତଣି, କମଳ କେଶର ରେ । ୧ ।

ଖରତର ହୋଇ ଯେ ବହୁଛୁ ଯମୁନା
ଖୀଲ କୋଟି ବ୍ରହ୍ମାଣ୍ଡ ଦେବତା ଆଦ କନ୍ୟା ।
କ୍ଷଣକ ମାତ୍ରକ ରୁ ଖଂଜ ହୋଇଥିବୁ
ଖଂଜାରୁ ଖସିଲେ ଗୋ ମିତଣି, ଖଣାରେ ପଡ଼ିବୁ ଯେ । ୨ ।

ଗଗନ ଶିଖରୁ ଯେ ବହୁଛୁ ତ୍ରିବେଣୀ
ଗଙ୍ଗାଧର ଶିରେ ଯେ ପଡ଼ୁଅଛୁ ପାଣି ।
ଗରୁଡ଼ ପକ୍ଷୀ ନାଦେ ରହି ଯେବେ ପାରୁ
ଗର୍ଜି ପାଣି ଖାଉ ରେ ମିତଣି, ଗମ୍ଭୀର ସରୋବରୁ ରେ । ୩ ।

ଘେନ ଗୋ ଦମ୍ପିନୀ ଘରେ କେତେ ପଣ
ଘୋର ଅନ୍ଧକାର ଦଶେ ପରକାଶ ।
ଘର ଛାଡ଼ି ଘୋର ବନକୁ ନ ଯିବୁ
ଏ ଘର ଛାଡ଼ିଲେ ଲୋ ମିତଣି, ଶୂନ୍ୟରେ ମିଶିବୁ ରେ । ୪ ।

---

(୩୪) କ୍ଷତନନ୍ଦନୀ—ସୀତା ।

ନ କର ଅଳସ ନଦୀ ପାର ହୁଅ
ନାରାୟଣ ନାମ ନିରନ୍ତରେ ଧ୍ୟାଅ ।
ନିଗମ ଭୂମିକ କରିଥିବୁ ଲଏ
ନିଜ ଘର ଚିହ୍ନି ପାରିଲେ ରେ ମିତଣି, ନାହିଁଟି ଯମଭୟ ରେ । ୫ ।

ଚଉଁ ଚଇତନରେ ଦ୍ୱାରପାଳ ସେହି
ଚଉକୂଟ ସ୍ଥାନେ ସ୍ୱେର ଅଛୁ ରହି ।
ଚନ୍ଦ୍ର ସୂର୍ଯ୍ୟଙ୍କର ତହିଁ ନାହିଁ ମେଳା
ଚିତ୍ତେ ଚେତାଇବୁ ରେ ମିତଣି, ସ୍ୱର ବେଦକଳା ରେ । ୬ ।

ଛୀରସିନ୍ଧୁ ମଧ୍ୟରେ ସ୍ୱାଦୁ ଜଳ ଭକ୍ଷ
ଛଡ଼ ଐଶ୍ୱ ମୁଖେ ଚଳଇ ପ୍ରତକ୍ଷ ।
ଛଟକ ଭିତରେ ଯେ ମଟକ ଲୁଚଇ
ଛୁଟ (ସୃଟ) ମୁନେ ମେରୁ ଶିଖର ଗୋ ମିତଣି, ନିଶ୍ଚଳ କରଇ ରେ । ୭ ।

ଜଗିଛନ୍ତି ଯୋଗୀ ଯେ ଜଗତହିତକୁ
ଜାଣିଛନ୍ତି ଉମା ଯେ ମହେଶ ତାହାଙ୍କୁ ।
ଜାଳ ଦହଡ଼ରେ ଯେ ନ ପଡ଼ଇ କାହିଁ
ଯାଇ ଆସୁଥାଇ ଗୋ ମିତଣି, ଜୁଆର ପ୍ରାଏ ହୋଇ ରେ । ୮ ।

ଝର ଝର ହୋଇ ଯେ ବହୁଛି ତ୍ରିବେଣୀ
ଝର ଟେକ ମୁଣ୍ଡେ ଧର ବୁଡ଼ି ଜାଣି ।
ଝେଙ୍କା ଛୁଣ୍ଡାଇ ଝର ମୁଣ୍ଡେ ବସ
ଝଗଡ଼ ଫସାବୁ ତରିବୁ ରେ ମିତଣି, ଝଟକ ବିଦୁହାସ ରେ । ୯ ।

ନିରାକାର ପ୍ରଭୁ ଯେ ଆପେ ଆପେ ଭଜ
ନିରେଖି ସ୍ୱହିଁଲେ ଯେ ପ୍ରଭୁ ଦେବରାଜ ।
ନିରେଖି ଲଲାଟ ଉପରକୁ ଅନା
ନିର୍ଭରେ ସ୍ୱହିଁ କନା ରେ ମିତଣି, ଉଡ଼ୁ ଯେ ଅଛୁ ବାନା ରେ । ୧୦ ।

ଟାଣପଣ ଗୋଟି ଛୁଡ଼ ରୁହି ପୁଣି
ଟେକ ବନ୍ଧ ବାନ୍ଧିଟି କରେ ରହୁ ପାଣି ।
ଟେକଥିବୁ ମନଟି ନ ପଡ଼ିବୁ ଟଳି
ଟହଟହ ହୋଇ ଯେ ହସିବେ ଗୋ ମିତଣି, ପ୍ରଭୁ ବନମାଳୀ ରେ । ୧୧ ।

ଠୂଳ ଶୂନ୍ୟ ବୋଲି ଯେ ବୋଲନ୍ତି ଜଗତ
ଠୂଳ ଶୂନ୍ୟ କେହ୍ନେ ହୋଇଛୁ ଗୁପତ ।
ଠାବ କଲେ ଠୂଳ ଶୂନ୍ୟରୁ ପ୍ରକାଶ
ଠିକେ ସଦାନନ୍ଦ ଚରଣେ ରେ ମିତଣୀ, ଭଣଇ କୃଷ୍ଣ ଦାସ ରେ । ୧୨ ।

ଡମ୍ବରୁଧର ଯା'ର ଚରଣେ ଶରଣ
ଡକା କରୁଛନ୍ତି ଡଙ୍ଗର ବେଦ ଜନ ।
ଡାକୁ-ହାକୁ ଥାଇ ଡେଙ୍ଗା ଜଗତରେ
ଡରେ ଯୋଗୀମାନେ ଘୂଞ୍ଚିଲେ ଗୋ ମିତଣି, ଡେଣା ବାନ୍ଧିବାରେ ଗୋ ।୧୩।

ଢମପଣ ଗୋଟି ଛାଡ଼ ଗୋ ମିତଣି
ଢାକ ବାନ୍ଧି କନା ପଡ଼ୁଛି ଢାଙ୍କୁଣି ।
ଢାଳୁ ଯେନୁଥିବୁ ଯେ କାଳିନ୍ଦୀ ଜଳର
ଢଳଢଳ ହୋଇ ଯେ ଦଶିବ ଗୋ ମିତଣି, ପ୍ରଭୁ ଆଦମୂଳ ଯେ । ୧୪ ।

ଅପୂର୍ବ ସୁନ୍ଦର ଯେ ପୁରର ମହିମା
ଅଷ୍ଟଗୋଟି ଖମ୍ବ ଯେ ଗଢ଼ିଲା ବିଶ୍ୱକର୍ମା ।
ଅଦୃଷ୍ଟି ସ୍ଥାନକୁ ଯେ ଅନୁକ୍ଷଣେ ଭଜ
ଅଣବ୍ରଣ ଶରେ ଗୋ ମିତଣି, ଧାଇଁଛନ୍ତି ସିଦ୍ଧ ଯେ । ୧୫ ।

ତପ କର ଲୋଡ଼ୁ ତ୍ରିବେଣୀ ନଦୀ ଏଡ଼ୁ
ତ୍ରିସନ୍ଧ୍ୟା ନକର ତ୍ରିଗୁଣି ନ ଫେଡ଼ୁ ।
ତରକେ ତ୍ରିଲୋଚନ ଚରଣେ ଗ୍ରୁଡ଼େ ନାହିଁ
ତରୁ କର ଷବଲେ ଗୋ ମିତଣି, ବହୁତ ଦୂରେ ନାହିଁ ରେ । ୧୬ ।

ଥିରେ ହେତୁ ଦେଇ ଗୁଣ ଗୋ ମିତଣି
ଥକା ଘରେ ଥାଇ କେତେ କନ୍ଥ ଟାଣି ।
ଅଥଏ ନୁହ ରୂ ଏ ବାଟେ ଖୋଜ
ଥଏ କପାଁ ନୋହୁ ଗୋ ମିତଣି, ଥରକେ ସଜଢିବ ରେ । ୧୭ ।

ଦୁର୍ଗମ ଗଡ଼କୁ ଯେ ଦଳାଇ ପାଞ୍ଚଜଣ
ଦଳାଇ କେ ପାଞ୍ଚ ପାଇକ ନିର୍ବାଣ ।
ଦୁଇ ଜଣ ତହିଁ ବସା କରିଥାନ୍ତି
ଦୁଇ ଜଣ ତହିଁ ଗୋ ମିତଣି, ଧସାଇ ପଶନ୍ତି ରେ । ୧୮ ।

ଧାଇଁଥିବୁ ମନ ଧୂନ୍ଦଘରଠାକୁ
ଧୀରେ ଖୁନ୍ଦୁଁକନା ଧବଳ ମୁଖକୁ ।
ଧାଇପଣେ ଧୂନ୍ଦଘର ଜଗିଥିବୁ
ଧନ ମୂଳ କଳାକୁ ରେ ମିତଣି, ଚନ୍ଦ୍ର ଧରଥିବୁ ରେ । ୯ ।

ନଦୀରେ ନାବ ନାହିଁ ନାଉରୀକରେ ପାର
ନଦ୍ୱଡ଼ା ଖଙ୍ଗ ସଖୀ ନିର୍ମଳ ଜଳର ।
ନିଗମ ଭୂମି କ ଦେଇଥିବୁ ଠଣା
ନାବରେ ବସିଲେ ଗୋ ମିତଣି, ସୁଖରେ ବୁଡ଼ଣା ନେ । ୧୦ ।

ପଢ଼ ପଢ଼ ସଖୀ ଗୋ ପରମହଂସ ବାଣୀ
ପଶ୍ଚିମ ଦ୍ୱାର କଢରେ ପଶି ପିଅ ପାଣି ।
ପୂର୍ବରୁ ନିରୋଧିଲେ ପଶ୍ଚିମେ କରେ ବାସ
ପୂର୍ଣ୍ଣ୍ୟମସ୍ତେ ହୋଇ ଗୋ ମିତଣି, ପରମପୁରୁଷ ସେ । ୧୧ ।

ଫିଟିଛୁ ଦେହଳକୁ ଦଶଗୋଟି ବାଟ
ଫିଟି ରହିଅଛୁ ସେ କଳଣି କବାଟ ।
ଫୁଲଣା ହୋଇଣ ସେ ଦେହଲେ ପଶ ସ୍ଥିରେ
ଫୁଫୁକାର ଧ୍ୱନ ଶୁଣି ମୁଁ ମିତଣି, ଫେଣାଧରଠାରେ ସେ । ୧୨ ।

ବୁଡ଼ିବୁ ସାତ ପାଞ୍ଚ ନଜ ସମାନ୍ତଲେ
ବଣା ହେଉଅଛୁ ସେ ବଟ ବନସ୍ତରେ ।
ବକ ପ୍ରାପ୍ତେ ହୋଇ ସେ ଟାକିବୁ ତହିଁକ
ବ୍ରହ୍ମାଦ ଦେବତାଏ ଗୋ ମିତଣି, ଖବନ୍ତ ସହିଁକ ସେ । ୧୩ ।

ଭୁଷଣ୍ଡିକାକ ସେ ଖ୍ୟାବଇ ସମ ସମ
ଭଲ ଠାବ କଲ ସେ ଆପଣା ନଜ ନାମ ।
ଭ୍ରାନ୍ତିକ ଛଡ଼ାଇ ସେ ଭ୍ରମର କଲ ବାସ
ଭେଲା କର ଗୁରୁଚରଣେ ଗୋ ମିତଣି, ଭଣଇ କୃଷ୍ଣ ଦାସ ରେ । ୧୪ ।

ମୃଗତୃଷ୍ଣା ଜଳେ ସେ ମୀନ ରହିଅଛୁ
ମୁରଲୀ ଶବଦ ଡାକ ବଜାଉଛୁ ।
ମଦନ-ଆରତେ ଗୋପୀଏ କାତର
ମୁରଲୀ ଶବଦ ବୁଝାଅ ଗୋ ମିତଣି, ଗହନ ତରୁର ସେ । ୧୫ ।

ଜାଗ ଜାଗ ମିତଣି ଗୋ ଶ୍ୟାମଳାଭଂଜାକୁ
ଜାଗିଲେ ଭେଟିବୁ ଜ୍ୟୋତି ଲାବଣ୍ୟକୁ ।
ଯୋଗବଳେ ଠଣାରେ ବସି ଖାଦ ଧ୍ୟାଯୀ
ଜନମ ପ୍ରକାରେ ଗୋ ମିତଣି, ଜଗିଥିବୁ ରହି ଯେ । ୧୬ ।

ରାଧିକା ଯମୁନାକୂଳେ ଅଛୁ ଜଗି
ରାହୁଛୁ କୃଷ୍ଣଙ୍କୁ ହୋଇ ଯେ ନଯୋଗୀ ।
ରମଣୀ ନ ପାଇ ଯେ ଗୋପୀଏ କାତର
ରସୁ ହସୁଥାଇ ଗୋ ମିତଣି, ରସପକ ଜର ଯେ । ୧୭ ।

ଲହଡ଼ି ମାରୁଛୁ ଯେ ନଷ୍ଟଳ ନ କଲୁ
ଲୁଚଅଛୁ କ୍ଷୀରରେ ଲବଣି ନ ଚହ୍ଲିଲୁ ।
ଲାଭ ହାନି ଦୁଇ ନ କଲୁ ତୁ ଠୁଳ
ନିଧି ହରାଇଲୁ ରେ ମିତଣି, ରସ ଫକଜର ରେ । ୧୮ ।

ବ୍ରହ୍ମାଦି ଦେବତାଏ ଖଟିଛନ୍ତି ପାଣ
ବୃନ୍ଦାବନ ଭିତରେ ଯେ ହେଉଛୁ ରାହାସ ।
ବଇକୁଣ୍ଠ ଭୁବନ ସେ ସ୍ଥାନକୁ କହ୍ନ
ବସ୍ଥିର ବୁଝିଲେ ଗୋ ମିତଣି, ବହୁତ ଦୂରେ ନାହିଁ ଯେ । ୧୯ ।

ଶ୍ରୀନୀଳକନ୍ଦରେ ଶ୍ରୀହରିଙ୍କ ବାସ
ଶ୍ୱେତ ପଦ୍ମ ପ୍ରାୟେ ଯେ ହୋଇଛୁ ପ୍ରକାଶ ।
ଶଶି ସୂର୍ଯ୍ୟଙ୍କୁ ତୁ ଏକ ହିଁ କରବୁ
ଶୁଦ୍ଧ ସୁବର୍ଣ୍ଣଙ୍କୁ ରେ ମିତଣି, ଚହ୍ଲିଣ ହେଜବୁ ଯେ । ୨୦ ।

ସିଂହ ଧାଉଡ଼ିରୁ କି ଶୃଗାଳ ଡରବ
ସ୍ୱର୍ଣ୍ଣଠାରେ ରୁପା କି ନିର୍ଣ୍ଣୟେ ହୋଇବ ।
ଶଙ୍ଖ ପ୍ରାୟେ କର କି ସିହାଣକୁ ଜଗ
ସିଂହାଣ ବଚନ ଗୋ ମିତଣି, ଉପଲେ ସିଞ୍ଚିବ ଯେ । ୨୧ ।

ଶିବ ଶଙ୍କରଙ୍କ ଏକତ୍ର କରବ
ସୀତାକୁ ଯେମନ୍ତେ ରାବଣ ହରି ନେବ ।
ସେତୁବନ୍ଧ ବାନ୍ଧି ରାମ ହେବେ ପାରି
ସଂଗ୍ରାମଭୂମିରେ ଗୋ ମିତଣି, ସମ୍ମୁଖେ ଥିବେ ହରି ଯେ । ୨୨ ।

ହରିଙ୍କ ମହିମା ଶୁଣ ଗୋ ସଂଗାତ
ହର ପୁରନ୍ଦର ଈଶ୍ବର ପଞ୍ଚମାଥ ।
ହରିହର ମହିମା ଏମାନେ ନ ଜାଣନ୍ତି
ହରିହର ମହିମା ଗୋ ମିତଣି, ଜପନ୍ତି ସିଦ୍ଧାନ୍ତ ଯେ । ୩୩ ।

କ୍ଷଣକ ମାତ୍ରକ ରୁ ବୁଜିବୁ ନୟନ
କ୍ଷଣକେ ଦେଖିବୁ ରୁ ପ୍ରଭୁ ଭଗବାନ ।
ଶଂଖ ଚକ୍ର ଗଦା ଚତୁର୍ଦ୍ଧା ମୂରତ
ଭଜଇ କୃଷ୍ଣ ଦାସ ଗୋ ମିତଣି, ସେ ପଦ୍ମପାଦ ଚନ୍ଦ୍ର ଯେ । ୩୪ ।

—o—

ଲେଖକ : ଗୌରଚରଣ ଅଧିକାରୀ

## ହରିନାମ କୀର୍ତ୍ତନ ଚଉତିଶା

କର ମନ ହରି ନାମ କୀର୍ତ୍ତନ
କହୁଛି ମୁଁ ତୋତେ ବାରମ୍ବାର । ଘୋଷା ।

କଳିତ ଲଳିତ ମଧୁର ବେଶ
ଖଳିତ ଲଳିତ ଚନ୍ଦ୍ରହାସ,
ଗଳିତ ଚରଣ-କମଳଯୁଗଳୁଁ
ମଧୁ ମକରନ୍ଦ ଧାର ଧାର । ୧ ।

ଘେନ ସୁତତ୍ତ୍ୱରେ କହୁଛି ସାର
ନବଘନ ତନୁ ନବ କିଶୋର,
ଚେତ ଭଜ ମନ ! ଅଳସ ନ କର
ହରିଚରିତର ସାର ସାର । ୨ ।

ଛୁଟିବ ଅନ୍ତକେ ଏ ମୋହ ଫାଶ
ଜଗବନ୍ଧୁ ନାମ ଯତନେ ଘୋଷ,
ଝଗଡ଼ ମରନା କୃଷ୍ଣନାମ ବିନା
ଗତି କେବା ଏହି ଆର ଆର । ୩ ।

ନଷ୍ଟି ଉତ୍ସବରେ କର ତୁ ଧ୍ୟାନ
ଟିକାଏ ମନରେ ନ ଧର ଆନ,
ଠାକୁର ଚରଣେ ଆଶ୍ରେ କରିଥିଲେ
ଛୁଡ଼ିବ ଦୁର୍ଗତି ଝର ଝର । ୪ ।

ତେଣୁ ଆ ଶ୍ରବଣେ ନାମକୁ ତାର
ଡାକେ କି ବିପତ୍ତି ରହିବ ଆର,
ଆନନ୍ଦକନ୍ଦ ନାମ କନ୍ଦରୁ ମଧୁର
ପୀୟୂଷକୁ ବୋଲେ ଛୁର ଛୁର । ୫ ।

ରୁଣ୍ଡରେ ଶ୍ରୀକୃଷ୍ଣ ନାମକୁ ଗାଇ
ଥାନ କର ବ୍ରଜମଣ୍ଡଳେ ଯାଇ,
ଦିବ୍ୟ ଦେହ ଧର ବାରବନେ ହେର
ସେ ବନ ପୁରିବ ସାରସାଂର । ୬ ।

ଧୀର କର ତୋର ଧୈର୍ଯ୍ୟ ବୁଦ୍ଧି
ନନ୍ଦସୁତ ପଦ କର ତୁ ସିଦ୍ଧି,
ପଣ୍ଡିତମାନଙ୍କ ପାବନ ନିମନ୍ତେ
ନାମ ମୁକତି ବଜାର ଯା'ର । ୭ ।

ଫେରି ବ୍ରଜପୁରେ ପୋଷ ତୁ ପେଟ
ବୈଷ୍ଣବ ଚରଣଯୁଗଳେ ଲୋଟ,
ଭ୍ରାନ୍ତ ଯିବ ତୁଟି ସେ ବୃଷ୍ଟୀକ ଗଲେ
ନାହିଁ ସେ ସ୍ଥଳେ ବିକାର ଭାର । ୮ ।

ମନ ଦୃଢ଼ କରି ଲଗାଅ ଲକ୍ଷ୍ୟେ,
ଜୀମୂତବରନ ମୋହନ ରୂପେ,
ଶ୍ରୀବପବହାସ୍ୟ କଳବେଣୁଧାସ୍ୟ
ବୈଜୟନ୍ତୀହାର ଯାହାର ହାର । ୯ ।

ଲାବଣ୍ୟ ମୂରତି ନନ୍ଦନନ୍ଦନ
ବୃଷଭାନୁସୁତା ହୃଦଚନ୍ଦନ,
ସଂସାର ତାରଣେ ଦୁଷ୍ଟ ନିବାରଣେ
ବହୁବିଧ ଅବତାର ତାର । ୧୦ ।

ଶଙ୍ଖରେ ଘୋଟିଛୁ ସକଳ ରୋଗ
ଶାନ୍ତ ହେବା ପାଇଁ ଅଛୁ ପ୍ରୟୋଗ,
ହରିଚରିତ ପୀୟୂଷକୁ ପିଅ ତ
ଏହୁ ଉପଗ୍ରର ସାର ସାର । ୧୧ ।

ଷୁଦ୍ରମତ ଦ୍ୱିଜ ଗହର ଭୃପି
ଷଡଚକ୍ରା ଛାଡ଼ି ହୁଅ ଉଦାସୀ,
କ୍ଷମା କୃପାନିଧି ନାମ ଆଶ୍ରେ କଲେ
ହେବୁ ଭବ ଅକୂପାର ପାର । ୧୨ ।

ଲେଖକ : ଶ୍ରୀ ଚତୁର୍ଭୁଜ ପଟ୍ଟନାୟକ, ବି. ଏ.

# ଜୀବନ ଚଉତିଶା

( ପୂର୍ବଖଣ୍ଡ )

( ରାଗ—କେଦାର କାମୋଦୀ )

ଅକାରଣରେ ଜନ୍ମ ହେଲି ସଂସାରେ,
ଅବୋଧ ପ୍ରାୟ ହରି ନ ଭଜ ବାରେ ରେ,
ଅକାତରେ ତତସ୍ୱ ଜାଣୁଣ ଥିଲି
ଅଜ୍ଞାନ ଅନ୍ଧକାରେ ଦୁଃଖ ପାଇଲି ରେ । ୧ ।

ଆଶାଲତା ମରଣ ହେଲା ଜୀବନେ
ଆତ୍ମଜ୍ଞାନ ଉଦୟ ନୋହିଲା ମନେ ରେ,
ଝଉଲା ଜଳି ମୋର ଜୀବନ-ବନ
ଆସିଲେ ନାହିଁ କେହୁ ମୋହର କତ ରେ । ୨ ।

ଇନ୍ଦ୍ରିୟ ସୁଖଲୋଭେ ଜୀବନ ଗଲା,
ଇଚ୍ଛା କାମନା ବହୁ ମନେ ନ ମଲା ହେ,
ଈଶ ନାମ ନୋହିଲା ମୁଖୁଁ ବାହାର
ଇହଲୋକ ଲଭିଲି ନାହିଁ ଉଦ୍ଧାର ହେ । ୩ ।

ଉଠିଲା ନାହିଁ ମନେ ବିଭୁ-ଭଜନ
ଉର୍ଜିଲା ନାହିଁ ହୃଦେ ପୁଣ୍ୟ ତପନ ରେ,
ଉଦ୍ଧାର ହେବ କେବେ ନାହିଁ ଭାବନା
ଊର୍ଦ୍ଧବସ୍ଥାନ (୧) ମନ ବଢ଼େ ଯାତନା ଯେ । ୪ ।

ଋଜୁଭାବ ହୃଦୟ ନାହିଁ ଜୀବନେ
ଋଷି (୨) ପ୍ରାପ୍ତକ ଭୂଲେଁ ସଂସାରବନେ ରେ,
ଋଷ ସାଧକ ସଙ୍ଗେ ନ ବଳେ ମନ
ଋଦ୍ଧି (୩) ଲଭିବ କାହୁଁ ପୁଣ୍ୟ ରତନ ରେ । ୫ ।

ଏକା ଏକା ହୋଇ ମୁଁ ଭ୍ରମେ ଲୋକରେ
ଏକ ଧର୍ମର ଭାବ ନାହିଁ ହୃଦରେ ରେ,
ଏଣେତେଣେ ବୁଲିଣ ହୋଇଛି ଥକା
ଏବେ ନ ପଶେ ହୃଦେ କାହିଁକ ଦକା ରେ । ୬ ।

ଐହିକ ସୁଖେ ରତ ହୋଇଲା ମନ
ଐଶ ହୋଇଲେ ଯେତେ ସାଧୁ ସଜ୍ଜନ ରେ,
ଐକ୍ୟଭାବ ହୃଦରୁ ହେଲା ଅନ୍ତର
ଐନ୍ଦ୍ରଜାଲ ବିଶ୍ୱରେ ମୁଗ୍ଧ ସହର ରେ । ୭ ।

ଓଷ୍ଠାଗତ ହୋଇଲା ପ୍ରାଣ ମୋହର
ଓଁକାର ଶବ୍ଦ ନୁହେଁ ହୃଦୁଁ ବାହାର ରେ,
ଓଷଣେ ପଙ୍କ ପଚ ଗଲା ହୃଦୟ
ଓଜର କଲେ ନାହିଁ ପାପର କ୍ଷୟ ଯେ । ୮ ।

ଔଷଧ ଦେବ କେହୁ ପାପୀ ବୈରୀକୁ
ଔଦାସ୍ୟ ନାହିଁ ଯହୁଁ ପାପ ବସ୍ତୁକୁ ଯେ,
ଔଦ୍ଧତ୍ୟଭାବ ମନେ ରହେ ପ୍ରବଳ
ଔତ୍ସୁକ୍ୟ କାହୁଁ ମନେ ପାଇବ ସ୍ଥଳ ଯେ । ୯ ।

କଲି ନାନା ପାତକ ଭୁଲି ଧରମ
କଣ୍ଟକବଳ ପ୍ରାପ୍ତ ହେଲା ମରମ ରେ,
କଲି ନୁହଁଇ ଦୁଃଖ ଯେତେ ପାଇଲି
କଳଙ୍କର ପସରା ମୁଣ୍ଡେ ଧଇଲି ଯେ । ୧୦ ।

ଖଟ ଶେଯାଇ ଦେହ କଲ ଶୟନ
ଖଟିଲେ ପ୍ରାଣ ମନ ପାପ-ଚରଣ ଯେ,
ଖଣ୍ଡ ଖଣ୍ଡ ହୋଇଲା ପାତକୀ ମନ
ଖଣ୍ଡାଘାତେ ଯେସନେ କଦଳୀବନ ଯେ । ୧୧ ।

ଗଞ୍ଜଣା ଦେଲେ ଚହୁ ବନ୍ଧୁ ବାନ୍ଧବ
ଗଡ଼ିଲି ଦାଣ୍ଡେ ଦାଣ୍ଡେ ନ ପାଇ ଠାବ ଯେ,
ଗର୍ଜିଲି ସହୁଁ ପାପ-ବୋଝ ଗ୍ରସିଲା
ଗଣ୍ଡି-ବର୍ଣ୍ଣିରେ ଆତ୍ମା ଦେହ ଭାଙ୍ଗିଲି ଯେ । ୧୨ ।

ଘନ ଘନ ଆତଙ୍କେ ଗ୍ରଡ଼ିଲା ରଡ଼
ଘଡ଼ି-ଘଡ଼ିକେ ଉଠେ ଘଡ଼ିକେ ପଡ଼ ଯେ,
ଘର ଥାଉଁ ହୋଇଲି ଘରବିହୀନ
ଘଟିବ ମୋହ କର୍ମେ କେବେ ସୁଦିନ ହେ । ୧୩ ।

ଚଞ୍ଚଳ ଚିତ୍ତ ମୋର ସଦା ଭ୍ରମଇ
ଚଳିତେ ପାପଜଳେ ସୁଖେ ବୁଡ଼ଇ ଯେ,
ଚହଲ କଲେ ତାକୁ କେହୁ ଧରିବ
ଚପଳା ଦ୍ରୁତ ଗତି କେହୁ ବାରିବ ଯେ । ୧୪ ।

ଛନଛନ ହୃଦୟ ବୋଧ ନ ମାନେ
ଛଦ୍ମବେଶରେ ବୁଲେ ସକଳ ସ୍ଥାନେ ଯେ,
ଛନ୍ଦ କାପଟ୍ୟ ବହୁଅଛି ତା'ଠାରେ
ଛଟକ କରେ ସେହୁ ବହୁ ପ୍ରକାରେ ଯେ । ୧୫ ।

ଜଗନ୍ନାଥ ପାଦ ନ ଧରି ପ୍ରାଣ
ଜଳୁଛି ପାପାନଳେ ତୃଣ ସମାନ ଯେ,
ଜଗତବନ୍ଧୁ ଥାଉଁ ବନ୍ଧୁବିହୀନ
ଜଳବିହୀନେ ପ୍ରାଣ ତ୍ୟଜେ କି ମୀନ ଯେ । ୧୬ ।

ଝାଡ଼ ସଂସାରେ ଆଉ ରହିବି ନାହିଁ
ଝିଟ ଜୀବନ ଧରି କି ହେବ ଭାଇ ହେ,
ଝୁଣ୍ଟିଲି ବାର ବାର ବଢ଼େ ଯାତନା
ଝଡ଼ ନ ପଡ଼େ ପ୍ରାଣୁ ଗୁରୁ ବେଦନା ଯେ । ୧୭ ।

ଟଳଇ ମନ ସଦା ପ୍ରଲୋଭନରେ
ଟାଣେ ସଂସାର ପ୍ରାଣ ପାପସ୍ପୃହରେ ଯେ,
ଟପ ଟପ ପଡ଼ଇ ନେତ୍ରାଶ୍ରୁ ବିନ୍ଦୁ
ଟିକେ ଉଚ୍ଛୁଳଇ ଶୋକର ସିନ୍ଧୁ ଯେ । ୧୮ ।

ଠୁଳ ଠୁଳ ଦେଖ ଏ ପାପ ମୋହର
ଠିକ କହୁଛୁ କଥା ଶ୍ରବଣ କର ଯେ,
ଠିଆହୋଇଲେ ସୁଙ୍ଖା ପଡ଼ୁଛୁ ତଳେ
ଠସ ଠସ ବୁହଇ ନୟନଜଳେ ଯେ । ୧୯ ।

(ଉତ୍ତର ଖଣ୍ଡ)

ଡଙ୍କା ବାଜୁଛୁ ଏବେ ଶୁଣ ସୁଜନେ
ଡେଇଁ ଡେଇଁ ବସିବା ବ୍ରହ୍ମଚରଣେ ଯେ,
ଡର ଭାବନା ଏବେ ହେଲା ଅନ୍ତର
ଡୁବି ବ୍ରହ୍ମସାଗରେ ହେବା ଅମର ହେ । ୨୦ ।

ଢାଳେ ଅମୃତଧାର ହରିଙ୍କ ନାମ
ଢଳଇ ମନପ୍ରାଣ ପୂରଇ କାମ ଯେ,
ଢମ ଦୃଷ୍ଟି ଯେତେ ହୋଇଲା ଦୂର
ଢଳଢଳ ଅଶ୍ରୁରେ ନୟନ ମୋର ଯେ । ୨୧ ।

ତରତର ହୋଇଣ ସ୍ଥିର ହେ ଯିବା
ତୁରିତେ ପ୍ରଭୁପାଦେ ଶରଣ ନେବା ଯେ,
ତନୁ ମନ ଅର୍ପିବା ତାଙ୍କ ପୟରେ
ତାହାଙ୍କ ବିନା ପାପ ତାପ କେ ହରେ ଯେ । ୨୨ ।

ଥୟ କାହୁଁ ଧରିବ ମୋହର ମନ
ଥାପିଲେ ପ୍ରଭୁ ବକ୍ଷେ ଯହୁଁ ଚରଣ ଯେ,
ଥିବ ତା ଦୃଢ଼େ ଧରି ଚିର ଜୀବନ
ଥିଲେ ଯେସନେ ଭକ୍ତେ ନରରତନ ଯେ । ୨୩ ।

ଦୟା ଉଦାର ଭାଇ ପ୍ରକାଶ କର
ଦୁଃଖୀ ମାନବ ଦୁଃଖ ଯତନେ ହର ଯେ,
ଦେଶ ଦୁର୍ଦ୍ଦଶା ଶୀଘ୍ର ଘୁଞ୍ଚିବ ଭାଇ
ଦୟାମୟଙ୍କ ଦୟା ଗୁଣରେ ଗାଇ ଯେ । ୨୪ ।

ଧର ହେ ସତ୍ୟବାନା ବେଗେ କେ ଅଛ
ଧାଇଁ ମର୍ତ୍ତ୍ୟ-ସମରେ ନ ହୁଅ ପଛ ହେ,
ଧର୍ମବନ୍ତୁଁ ଅଧୁନା କାହାର ବଳ
ଧରାଧାମ ହୋଇବ ସ୍ୱରଗସ୍ଥଳ ସେ । ୨୫ ।

ନଶ୍ୱର ତନୁ ତ୍ୟଜି ହେବା ଅମର
ନ ରହୁ ପାପ ତାପ ଦୁଃଖ ସତ୍ୱର ଗୋ,
ନବାଙ୍ଗଦୀପ ପ୍ରାପ୍ତ ନିଷ୍କାମ ମନ
ନିଶ୍ଚଳେ ପ୍ରଭୁ ଧ୍ୟାନେ ରହୁ ମଗନ ଗୋ । ୨୬ ।

ପରମପଦ ଲଭେ ତ୍ରୁର ସଂସାର
ପରମାନନ୍ଦ ଦେବେ ପ୍ରଭୁ ଅପାର ଗୋ,
ପତିତପାବନ ନାମ ନେଲେ ମଧୁର
ପତିତ ତରେ ପାଇ ସୁଖ ପ୍ରଚୁର ଗୋ । ୨୭ ।

ଫଣୀ ମସ୍ତକେ ମଣି ପଙ୍କେ କମଳ
ଫୁଟେ କଣ୍ଟକେ ଫୁଲ ବିଧି କୌଶଳ ଗୋ,
ଫୁଟିବ ପାପ ହୃଦେ ପୁଣ୍ୟ-ନିର୍ଝର
ଫେଡ଼ିବେ ଦୁଃଖରାଶି ଦୟାସାଗର ଗୋ । ୨୮ ।

ବାରି ବାରିଦ ସିଞ୍ଚେ ଯଥା ଯତନେ,
ବର୍ଷୁଛି ପ୍ରେମ ଘନ ହୃଦ-ସଦନେ ଗୋ,
ବଢ଼ି ଅଚଳ ଦେଖ ଜୀବନଲୀଳା
ବସି ବୈକୁଣ୍ଠେ ଲଭ ଭକ୍ତ ନିଶ୍ଚଳା ଗୋ । ୨୯ ।

ଭକତ ମୁକ୍ତି କର୍ମ ଯୋଗ ମିଳନ
ଭୁକ୍ତି ସାଧନ ଶୂନ୍ୟ ହୋଇ ଯତନ ଗୋ,
ଭବବନ୍ଧନ ହେଲା ଦୂରୁଁ ଅନ୍ତର
ଭୟ ଭାବନା ସର୍ବ ଗଲା ସତ୍ୱର ଗୋ । ୩୦ ।

ମନର ବୃତ୍ତି ସଖୀ ହୃଦ-ବନ୍ଧନେ
ମିଶି ମିଳନ୍ତି ଅଜ ହରି ଅନ୍ତକେ ଗୋ,
ମୋହେ ବୃନ୍ଦାବନର ଶୋଭା ଅନ୍ତର
ମଣୁଁ ଅପୂର୍ବ ସୁଖ ଆଜ ଦିନର ଗୋ । ୩୧ ।

ଯମ-ଯନ୍ତ୍ରଣା ଯାଉ ତୁଅ ଅମର
ଯୁବକ ବୃଦ୍ଧ ବାଳ ସୁଖେ ସଞ୍ଚର ଗୋ,
ଯୁଗ-ଯୁଗରେ ହରି-ନାମ-କୀର୍ତ୍ତନ
ଯାତନା ଦୁଃଖରାଶି ଅପନୋଦନ ଗୋ । ୩୨ ।

ରୋମାଞ୍ଚ ତନୁ ଆଜ ବ୍ରହ୍ମ ପରଶେ
ରୋଧୁଛି କଣ୍ଠସ୍ୱର ଭାଷା ନ ଆସେ ଗୋ,
ରୂପରାଶି ମୋହନ ହରି ମୋହର
ରଖିବେ ଚରଣନ ନରି କିଙ୍କର ଗୋ । ୩୩ ।

ଲଭିଛି ଲୀଳା ଦେଖି ବ୍ରହ୍ମଧାମରେ
ଲଭିବ ଦିବ୍ୟସୁଖ ସାଧୁ ସଙ୍ଗରେ ଗୋ,
ଲୂନ (୧) ଲାଲସା ସର୍ବ ହେବ ଦହନ ,
ଲଭିବା କୃପାବଳେ ଦିବ୍ୟଲୋଚନ ଗୋ । ୩୪ ।

ଶବ୍ଦ ଶୁଭୁଛି ଆହା ଶ୍ରୁତି-ମଧୁର
ଶ୍ରବଣେ ହରି-ନାମ ଦୁର୍ବଳ ଶୂର ଗୋ,
ଶୋଭା ସମ୍ପଦ ତାଙ୍କ ବଳଛି ଗିର
ଶ୍ରବୁଛି ଘନ ଘନ ନୟନୁ ନୀର ଗୋ । ୩୫ ।

ଷୋଡ଼ଶ ଅଙ୍ଗେ ପୂଜା କରି ସାଧନ
ଷଡ଼ଙ୍ଗ ସାଧୁ ହେବ କି ପ୍ରୟୋଜନ ଗୋ,
ଷଡ଼ଧା ଭକ୍ତି ଯୋଗୁଁ ହେବ ସୁଫଳ
ଷଡ଼ବର୍ଗ ଦମନେ ଚିତ୍ତ ନିର୍ମଳ ଗୋ । ୩୬ ।

ସକଳ ଦୁଃଖ ହର ଦୀନଶରଣ
ସଦୟ ହୁଅ ପ୍ରଭୋ ଦିଅ ଚରଣ ହେ,
ସଦା କିଙ୍କର ମୁହିଁ ସେବକ ଦାସ
ହଦା ରକ୍ଷିଛି ତୁମ୍ଭ କୃପାରେ ଅଶ ହେ । ୩୭ ।

ହର ଜଗତ ପାପ ଭକ୍ତବତ୍ସଳ
ହରଷେ ଜଗଜନ ହରନ୍ତୁ କାଳ ଗୋ,
ହେଉ ଅମରଧାମ ଭବ-ଭବନ
ହରିଙ୍କ ନାମଗୁଣେ ସର୍ବ ସାଧନ ଗୋ । ୩୮ ।

---

(୧) ଲୂନ—ଛିନ୍ନ, କର୍ତ୍ତିତ, ଆହୃତ ।

ଲେଖକ : ଦନେଇ ଦାସ

# ପହଲୀ ଚଉତିଶା

କରମରେ ଥାଇ ଯାହାର ଦଶା,
ସେ କର୍ପା କରଇ ପରକୁ ଆଶା
ପର ସ୍ତ୍ରୀ ଯେବେ ହରଇ ପୁଂଷା
କହେ ଦନେଇ ଏ ପାପ ଦୁର୍ଦ୍ଦଶା । ୧ ।

ଖଣ୍ଡିଆ ଗୀତ ରଙ୍କ ମାଗୀତ
ଧୋବା ସଙ୍ଗାତ, ଭଣ୍ଡାଣୀ ମିତ
କହେ ଦନାଇ ଏ କାହିଁକି ହିତ । ୨ ।

ଗଡ଼ ହୋଇ କର ନଥାଏ ବଣ
ଘର ଗୃହସ୍ଥର ନଥାଇ ପଣ,
ଥୋଇଲ୍ ମାଇପ ନୁହଇ ଠଣ
କହେ ଦନାଇ ଏ କାହିଁରେ ଗଣ । ୩ ।

ଘୋର ବରଷା, ରଜନୀ ନିଶା
ଘନକାଳେ ଯେବେ ନଥାଇ ପୁଂଷା
ଘାଣ୍ଟି ହେଉଥାଇ ଦେବସ ନିଶା
କହେ ଦନାଇ ଏ ସ୍ତ୍ରୀଙ୍କ ଦଶା । ୪ ।

ନଦୀ ହୋଇ କର ନଥାଏ ଜଳ
ଗ୍ରାମ ହୋଇ ନାହିଁ ଗୋଳ-ଚହଳ,
ଯୁବା ସ୍ତ୍ରୀ ମୁଣ୍ଡେ ନଥାଇ ବାଳ
କହେ ଦନାଇ ଏ କଥା ନିଷ୍ଫଳ । ୫ ।

ଚଉ ଦୁଢ଼ କର ଶଠ ଲକ୍ଷଣ
ଚଟା କାଟି ମାଳା କରେ ଭଜନ,
ଲୁହେଁ ନେବାପାଇଁ ପରର ଧନ
କହେ ଦନାଇ ଏ ଠକ ଦୁର୍ଜ୍ଜନ । ୬ ।

ଛଇଲ ପଣ ନ ଥାଇ ଯାହାର
ଛଳ ନାହ୍ନ ସତ୍ୟବଚନ ସାର,
ଛନ୍ଦ କୁଟିଳ ନଥାଇ ଯେ ଜନ,
କହେ ଦନାଇ ଏ ପୁରୁଷରତନ । ୭ ।

ଯେଉଁ ଚଢ଼େଇର ଭୁଇଁରେ ବସା
ପୋଇଲା ହୋଇ କରିଥାଇ ଓସା,
ପାଣି-ବ୍ରାହ୍ମଣଙ୍କ ମୁଣ୍ଡରେ ଖୋସା
କହେ ଦନାଇ ଏ ଫସରଫସା । ୮ ।

ଝିଅ ବିଭା କରି ନିଅନ୍ତି ଧନ
ଝିଗଡ଼ା ହୋଇଣ ଯେବଣ ଜନ,
ଝିଙ୍କଣ ନିଅଇ ଅଳପ ଧନ,
କହେ ଦନାଇ ଏ ପ୍ରପଞ୍ଚ ମନ । ୯ ।

ନୃପତି ହୋଇଣ ନଥାଏଁ ମନ୍ତ୍ରୀ
ନ ଜାଣି ନ ପଢ଼ି ବିଦେଶ ଯାନ୍ତି,
ନାରଖାର ହୋଇ ଯେବଣ ଗତି
କହେ ଦନାଇ ଏ କୁତ୍ସିତ ଜାତି । ୧୦ ।

ଟଙ୍କ ନଥାଇ କି ଟସ
ଟାଙ୍ଗସ୍ ମୁଣ୍ଡରେ ଗସ
କୁଳବୁଅସୁଣୀ ଦାଣ୍ଡରେ ହସ
କହେ ଦନାଇ ଏ କାହିଁ କି ଶୋଷ । ୧୧ ।

ଠିକଣା ନଥାଇ ଯେବଣ ଜନ
ଠିକରେ କହଇ ଦନାଇ ସ୍ଥାନ,
ଠାପୁଆ ହୋଇଣ ଯେବଣ ବାବୁ
କହଇ ଦନାଇ ଏ କଥା ସବୁ । ୧୨ ।

ଡରେ ଥରହର ନୁହଇ ସୁତ
ଡ କଇ ଯାହାର ପାଖରୁ ତାତ,
ଡାକ ନ ଶୁଣଇ ଧରଇ ଠେଙ୍ଗା
କହେ ଦନାଇ ଏ କୁଳବାହୁଙ୍ଗା । ୧୩ ।

ଢୋଲ ହୋଇକରି ନ ଥାଇ ସ୍ୱର
ସର ହୋଇ ଯେବେ ନ ଥାଇ କ୍ଷୀର,
ଢମାଲିଆ ନାମ ଅଟେ ସେ ସ୍ୱର
କହେ ଦନାଇ ଏ କଥା ନକର । ୧୪ ।

ଅଣ୍ଡାଭଙ୍ଗା ହୋଇ ଯେବଣ ଦାରୁ
ଫୁଲ ପ୍ରାପ୍ତେ ହୋଇ ପାଣିକଖାରୁ,
× × ×
କହେ ଦନାଇ ଏ ଢନହେଁ ମାରୁ । ୧୫ ।

ଢଅଣ ହୋଇଣ ହୁଏ ଅଲଣା
ସୁନା ଝାଳବାରେ ନାହିଁ ଟାଙ୍ଗଣା,
ତାଲ ଧରି ଯେବେ ହୁଅନ୍ତି ବଣା
କହେ ଦନାଇ ଏ ଢନହେଁ କଣା । ୧୬ ।

ଥିର ହୋଇକରି ଶୁଣିବା ନରେ,
ଯୋଇଲ୍ ମାଇପ ଯାହାର ଘରେ,
ଅସ୍ଥ ନ ହୁଏ ଯେ ତାହାଙ୍କ ମନ,
କହଇ ଦନାଇ ସେ ବଡ଼ ସ୍ଥାନ । ୧୭ ।

ଦାରିଦ୍ର୍ୟ ଅଟଇ ଯୁବା ବୟସ,
ଦୁଃଖୀ ଦେଖିଲେ ଯେ କରେ ନିରାଶ,
ଦୁର୍ବୁଦ୍ଧି ବୋଲିଣ ତାହାକୁ କହି
କହେ ଦନାଇ ଏ ନନ୍ଦା ବୁଦ୍ଧଇ । ୧୮ ।

ଧନ ସଞ୍ଚଥାଇ ଯେବଣ ପ୍ରାଣୀ
ଧରଣ ବକଲ ହୁଅନ୍ତି ପୁଣି,
ଧୂଳି ନ ଲଗଇ ଯେମନ୍ତ ପାଦ
କହେ ଦନାଇ ଏ ବଡ଼ ପ୍ରମାଦ । ୧୯ ।

ନୃପତି ହୋଇଣ ନ ବୁଝେ ପୃଥୀ
ଲଜ୍ଜାବତୀ ଯେବେ ବେଶ୍ୟା ହୁଅନ୍ତି,
ନାହିଁ ଏହାଙ୍କ ସଂସାରରେ ବାସ
କହେ ଦନାଇ ଏ ଜାତିରେ ନାଶ । ୨୦ ।

ପାଇକ ହୋଇ  ଚରଣଫାଟୁଆ
ବଳଦ ହୋଇ ବାନ୍ଧଣା ମଠୁଆ,
ପୁରୁଷ ହୋଇ  ମାଇପଘଣ୍ଟୁଆ
କହେ ଦନାଇ ସର୍ବେ ବଣ୍ଟୁଆ । ୨୧ ।

ଫୁଲ ହୋଇ ଯେବେ ନଥାଇ ବାସ,
ଫୁଲୁଣିଆ ଯେବେ ହୁଏ ନରେଶ,
ଫନ୍ଦା କଶ ଯେବେ କରଇ ହେଳା
କହେ ଦନାଇ ବୁଡ଼ିଯାଏ ଭେଳା । ୨୨ ।

ବ୍ରାହ୍ମଣ ହୋଇଣ ପିନ୍ଧଇ ଖଦ,
ବିଧବା ହୋଇଣ ଲଗାଏ ମୁଦ,
ବଡ଼ପଣ ଆଉ ନ କରେ ସିଦ୍ଧି,
କହେ ଦନାଇ ଏ ନର୍ଲଜ୍ଜ ବୁଦ୍ଧି । ୨୩ ।

ଖାଇ ସଙ୍ଗେ ଯେହୁ କରଇ ଅଳି
ଖଣ୍ଡିଆ ବୋଲିଣ ତାହାକୁ ବୋଲି,
ଭଲ ଭଲ ଲୋକେ ବୋଲନ୍ତି ମନ୍ଦ
କହେ ଦନାଇ ଏ ସୁଖବେ ଅନ୍ଧ । ୨୪ ।

ମେଘ ଗରଜନ,
ବ୍ରାହ୍ମଣ ଭୋଜନ,
ଛଅଣ' ଚକୁଳି ଘଷମରଦନ,
ପିଢ଼ା ଫାଟଇ ଲନ୍ଧ ଲୋଟଇ,
କହେ ଦନାଇ ସେ ଠାଆରୁ ଉଠଇ । ୨୫ ।

ଜପଇ ମନରେ ତୁଳସୀ ମାଳି
ଗ୍ରାମେ ଗ୍ରାମେ ପଶି କରଇ ମେଳି,
ଯେମନ୍ତ ଲୋକର ଏମନ୍ତ ଗଢ
କହେ ଦନାଇ ସେ ମିଛ ଭକଢ । ୨୬ ।

ରାମ ନାମ ବୋଲୁଥାନ୍ତି ଯେ ମୁଖେ
ରାଗ ବହୁଥାନ୍ତି ଜଗତଲୋକେ
ରାଗୁଆ ବୋଲିଣ ତାହାକୁ କହି
କହେ ଦନାଇ ସେ ଯୋଗୀ ନୁହଇ । ୨୭ ।

ଲଜ ନଥାଇ ଯେବଣ ମୁଖେ
ଲୋଭ କରଯାଏ ଆଲୁଅ ପକ୍ଷେ,
ଲର୍କ୍ଷପରେ ଖାଆନ୍ତି ମାଡ଼
କହେ ଦନାଇ ତାଙ୍କ ମୁହଁ ପୋଡ଼ । ୨୮ ।

ବ୍ରାହ୍ମଣ ରାଜା ଖଣ୍ଡ ପରଜା
ବହତ ଆମ୍ବ ଲ ଶୀତଳ ଭଜା
କହେ ଦନାଇ ଏ କାହିଁକି ମଜା । ୨୯ ।

ଶ୍ରୀମନ୍ତ ହୋଇଣ ଯେବଣ ନର
ଶାନ୍ତଶୀଳ ହୋଇ କହେ ଉତ୍ତର,
ଶୁଣେଇ ପଢ଼ଇ ଜାଣେ ବିବେକ,
କହେ ଦନାଇ ସେହୁ ବଡ଼ଲୋକ । ୩୦ ।

ଶୁଆ ହୋଇ ଯେବେ ନ ଭାଷେ ବାଣୀ
ଶିଷ୍ୟ ହୋଇ ଯେବେ ଗୁରୁ ନ ମାନି
ସଂସାରେ ବୋଲନ୍ତି ଏହାକୁ ନଷ୍ଟ,
କହେ ଦନାଇ ଏ ତ ବଡ଼ କଷ୍ଟ । ୩୧ ।

ସଙ୍ଗି ବସିଥିବ ସାଙ୍ଗସରିସା
ଶାନ୍ତଶୀଳ ହୋଇ କହିବ ଭାଷା,
ସଂସାରେ ବୋଲନ୍ତି ଉତ୍ତମ ଲୋକ
କହେ ଦନାଇ ସେ ବଡ଼ ବିବେକ । ୩୨ ।

ହସନ୍ତି ମନରେ ନଥାଇ ଦୟା
ହୃଦୟ ଭିତରେ କରନ୍ତି ମାୟା,
ହେରେଷା ବୋଲିଣ ତାହାଙ୍କୁ କହି
କହେ ଦନାଇ ଏ କଥା ନୁହଇ । ୩୩ ।

କ୍ଷକ୍ଷନେ ମୋହର ନଧର ଦୋଷ
କ୍ଷକ୍ଷନେ କହଇ ଦନାଇ ଦାସ,
କ୍ଷମାସାଗରଙ୍କ ପାଦେ ଶରଣ
କ୍ଷେମରେ ଦନାଇ ପଶେ ଶରଣ । ୩୪ ।

ଲେଖକ : ଦ୍ୱାରକା ଦାସ

# ଶରୀରଭେଦ ଚଉତିଶା

କହନ୍ତି ଉଦ୍ଧବଙ୍କୁ ହରି
କର ଆସନ ଦୃଢ଼ କରି ।୧।
ଖସିଲ୍ଲ ଅଶ୍ୱୋଣ ବାଇ
ଖିଣ ନାଳରେ ଖଣ୍ଡ ନେଇ ।୨।
ଗଙ୍ଗାଙ୍କୁ ବୁହାଅ ଉଜାଣି
ଗଗନ ଶିଖେ ଟେକ ପାଣି ।୩।
ଘାଟମୁଣ୍ଡରେ ବନ୍ଧ ବାନ୍ଧ
ଘେନ ତ୍ରିକୂଟଙ୍କୁ ନିରୋଧ ।୪।
ଙଁକାର ମଧ୍ୟେ ରଖ ହେବୁ
ଉଡନ୍ତା ପକ୍ଷୀକୁ ଧର ତୁ ।୫।
ଚନ୍ଦ ପବନ ମନ୍ତ୍ରାବଳୀ
ଚନ୍ତା-ଚକ୍ଷୁରେ ରଖ ତୋଳି ।୬।
ଛଡ଼ଚନ୍ଦଙ୍କୁ କର ଏକ
ଛନ୍ଦବୁ ନବ ଦ୍ୱାରଯାକ ।୭।
ଜୀବଙ୍କୁ ପରମେ ପୂରାଇ
ଜଗେ ବସିବୁ ଜ୍ୟୋତ ସ୍ୱନ୍ଧି ।୮।
ଝର ପଶ୍ଚିମେ କର ଠଣା
ଝଗଡ଼ା ସରଇ ତୋ ସିନା ।୯।
ନାଦବିନ୍ଦୁକୁ ମିଶାଇବୁ
ନାସା ଅଗ୍ରକୁ ଦୃଷ୍ଟି ଦେବୁ ।୧୦।
ଟେକ ତୁ ହେବୁକୁ ଉପରେ
ଟଳିବ ନାହିଁ ନବଦ୍ୱାରେ ।୧୧।
ଠାବ ତୁ କଲେ ଅନାହତେ
ଠାବେ ଦେଖିବୁ ଖୀର ମୋତେ ।୧୨।
ଡମ୍ବରୁ ଖୋଲ ଫିଟାଇବୁ
ଡୋଳା ଫିରୁଲାକୁ ଦେଖିବୁ ।୧୩।

ଠାକୁଣୀ ଫିଟିଲେ ତୋହର
ଠାଳେ ଦେଖିବୁ ମୋ ଶରୀର । ୧୪ ।
ଅଣ ଅକ୍ଷରେ କର ଲକ୍ଷ୍ୟ
ଅଦୃଶ୍ୟ ଭାବ ମୁଁ ଅଟଇ । ୧୫ ।
ତନଙ୍କି ଏକ କର ଅନା
ତେବେ ଦେଖିବୁ ମୋ ଭାବନା । ୧୬ ।
ଥଏ ରୁ କଲେ ଥକା ମନ
ଥାନେ ଦେଖିବୁ ଭଗବାନ । ୧୭ ।
ଦଥ ରୁ ହେବୁ ବୁଦ୍ଧି ତୋର
ଦେଖିବୁ ସାକ୍ଷାତେ ଈଶ୍ୱର । ୧୮ ।
ଧ୍ୟାନ ଧାରଣା ରୁ ଉପେକ୍ଷ
ଧ୍ୟାନ ନିଶ୍ଚଳେ ମନ ରଖ । ୧୯ ।
ନିଶ୍ଚଳ ହେଲେ ତୋର ଧ୍ୟାନ
ନିରଂଜନଙ୍କ ଦରଶନ । ୨୦ ।
ପୂରକ କୁମ୍ଭକ ସାଧନ
ପୂରଉଛୁ ତୋର ମନ । ୨୧ ।
ଫୁଟାଅ ଷୋଳ ଡମ୍ବରରେ
ଫେରୁ ନଫେରୁ ମୂର୍ଚ୍ଛାରେ । ୨୨ ।
ବ୍ରହ୍ମ ମୁଁ ନିଷ୍ଠେ ଅବତାର
ବସିଛୁ ତନ ରୂପ ମୋର । ୨୩ ।
ଭାବ ରୁ ହଂସ ମନ୍ତ୍ର ଧର
ଭ୍ରୂ ସ୍ଥାନ ମଧ୍ୟେ ହେବୁ କର । ୨୪ ।
ମୃଣାଳ ସୂକ୍ଷ୍ମ ମାର୍ଗ ଜ୍ୟୋତି
ମହା ଶୂନ୍ୟରୁ ଉତପତି । ୨୫ ।
ଜାମ୍ବୁନଦଣା କଳେବର
ଯୋଗେ ଦେଖିବୁ ମୋ ଶରୀର । ୨୬ ।
ରାଜୀବଲୋଚନ ସୁନ୍ଦର
ରଙ୍ଗା ଅଧର ଚକ୍ରଧର । ୨୭ ।
ଲକ୍ଷିତ ଶଙ୍ଖ ଚକ୍ର ଗଦା
ଚତୁର ଭୁଜେ ଶୋହେ ସଦା । ୨୮ ।
ବଇଜୟନ୍ତୀ ମାଳା ଗଳେ
ବକ୍ଷସ୍ଥଳରେ ସଦା ଝୁଲେ । ୨୯ ।

ଶ୍ରୀବତ୍ସ ଚନ୍ଦ୍ର ପୀତବାସ
ସହଜେ ଗୋପାଳ ମୋ ବେଶ । ୩୦ ।
ସେ ରୂପ ନୟନେ ଦେଖିବୁ
ସକଳ ପାପୁଁ ନସ୍ତରିବୁ । ୩୧ ।
ସଙ୍ଗ ମଣିବୁ ମୋହମୟ
ସକଳ ମୋହର ପରାୟ । ୩୨ ।
ହରିର ବଚନେ ଉଦ୍ଧବ
ହୋଇଲେ ଶଦ୍ଧେକ ପ୍ରଲମ୍ବ । ୩୩ ।
ଛଛନ୍ଦେ କହଇ ଦ୍ୱାରକା
କୃଷ୍ଣ ମୋ ବିଷୟାର ଢକା । ୩୪ ।

---

ଲେଖକ : ନଧି ରଥ

## ଭଲ ମନ୍ଦ ଚଉତିଶା

କଚ୍ଛ କଚ୍ଛ ଦାନ, କଦଳୀପତ୍ରରେ ଭୋଜନ,
କୃଷ୍ଣ ପାଦପଦ୍ମରେ ନତ ଧ୍ୟାନ, ସଖୀ ଭଲ ଏ,
କଳହରେ ସଧ, କଅଁଳା ଗାଈ ଦୁଧ,
କୃଷ୍ଣ ବୈଷ୍ଣବରେ ଅପରାଧ, ସଖୀ ମନ୍ଦ ଏ । ୧ ।

ଖାଲ ଭୂମି ବୃଷ, ଖଣ୍ଡକ୍ଷୀର ଗ୍ରାସ
ଖଟିଥିବ ଗୁଣଚନ୍ଦ୍ରା ନରପତ୍ତି ପାଶ, ସଖୀ ଭଲ ଏ,
ଖଳ ସଙ୍ଗେ ମେଳ, ଖଣ୍ଡାଇତ କାଳ,
ଖଣ୍ଡିଆ ଖଟୁଲି ହାଣ୍ଡିଶାଳ ଗୁହାଳ, ସଖୀ ମନ୍ଦ ଏ । ୨ ।

ଗୁପତ ପୀରତ, ଗଙ୍ଗାରେ ସ୍ଥିତ
ଗୁରୁଜନମାନଙ୍କରେ ହେଉଥିବ ବିନତ, ସଖୀ ଭଲ ଏ,
ଗରୁଆ ଗୁମାନ, ଗୁପତେ ମିଷ୍ଟ ଅନ୍ନ,
ଗର୍ଭିଣୀ ନାରୀ ସଙ୍ଗେ କରିବା ରମଣ, ସଖୀ ମନ୍ଦ ଏ । ୩ ।

ଘେନାଘେନ ବଚନ, ଘାଣ୍ଟିଆ ବ୍ୟଞ୍ଜନ,
ଘରକୁ ଭୂଷଣ ସ୍ତ୍ରୀ ସ୍ୱରତନ, ସଖୀ ଭଲ ଏ,
ଘରଣୀ ବିଚ୍ଛେଦ, ଘୁଂଘୁ ଡମରୁ ନାଦ,
ଘାସି ଘୃଷୁରିଆ ଘାଟିଆଙ୍କ ଭୁଲେ ବିବାଦ, ସଖୀ ମନ୍ଦ ଏ । ୪ ।

ନିର୍ମଳ ମନ, ନିର୍ଭୟ ସ୍ଥାନ,
ନଖବାନ୍ଧୁଆ ସରୁ ଧାନ ବନ୍ଧନ, ସଖୀ ଭଲ ଏ,
ନାସ୍ତିକ ପାଡ଼ୁଶୀ (୧), ନଲିଜ୍ଜ ପରବାସୀ,
ନିତ୍ୟାନିଦ୍ରେଗୀ, ନିଜ ପରବାସୀ, ସଖୀ ମନ୍ଦ ଏ । ୫ ।

ଚଉରକୁ ଚରୁଖି ଚୂଆ ଚନ୍ଦନ କସ୍ତୁରୀ
ଚନ୍ଦ୍ରମା ନିଶିକ ଚମ୍ପାଗଉରୀ (୨), ସଖୀ ଭଲ ଏ,
ଚେଁ-ଚେଁଇଆ ସେଜ, ଚକଟିଆ ଭଣ୍ଡାର
ଚୁର୍ଣ୍ଣ ଜଳକା, ଚଟପୀ ସ୍ତ୍ରୀ, ସଖୀ ମନ୍ଦ ଏ । ୬ ।

ଛନଛନ ଗାଇ, ଛୁଆମୁହାଁସୀ (୩) ଗାଇ,
ଛଟକ ଥିଲା ମାଇ, ସଖୀ ଭଲ ଏ,
ଛିଣ୍ଡାଳୀ ସ୍ୱଭଳା ପୁନି, ଛଳ ଘେନଲ ମିନ
ଛନ୍ଦ କପଟ ବସ୍ତୁରିଲ (୪) ଭ୍ରାତ, ସଖୀ ମନ୍ଦ ଏ । ୭ ।

ଜୁଆଇଁରେ ଆଦର, ଜୀର୍ଣ୍ଣ ପରେ ଆହାର,
ଜୀବଜନ୍ତୁଙ୍କଠାରେ ହୋଇବା ଦୟାପର, ସଖୀ ଭଲ ଏ,
ଯାଚ କରି ଦେବା, ଜୁଆ ଖେଳ ହାରିବା,
ଜୀବନ ଡରେ ଯୁଦ୍ଧଭୂଇଁରେ ଅପସରିଯିବା, ସଖୀ ମନ୍ଦ ଏ । ୮ ।

ଝିଅଙ୍କଠାରେ ସୋଗ (୫), ଝଡ଼ ପାଗରେ ପିଠା ଭୋଗ,
ଝୁଡ଼ଙ୍ଗ ମଞ୍ଜିକ କୋଶିଲା ଶାଗ, ସଖୀ ଭଲ ଏ,
ଝପ ଝପ ବୁଲି, ଝୁଣ୍ଟିପଡ଼ିଲେ ଗାଳି (୬)
ଝାଳ ଗମଗମ ଚଦଚ ଚାଲି, ସଖୀ ମନ୍ଦ ଏ । ୯ ।

---

ପାଠାନ୍ତର—(୧) ପଡ଼ୋଶୀ । (୨) ନଶାରେ ଚମ୍ପକଗୋରୀ । (୩) ଛୁଆ ମଇଁଷିଆ ।
(୪) କଳି । (୫) ସୁଆଗ । (୬) ମଲ୍ ।

ନବଘନ ଶାଗ, ନୃପଥ ଅନୁରାଗ
ନାଥନାରୁଣୀଙ୍କର ଚୂଡ଼ାପରେ ସୁଆଗ, ସଖୀ ଭଲ ଏ,
ଞମ୍'ଲ୍ଲି ବୋଲ ନାଗ ସଙ୍ଗେ ଗେଲ
ଞଉଛୁଣିଆ ଗୃଷକୁ ହଡ଼ାବଳଦ ପେଲ, ସଖୀ ମନ୍ଦ ଏ । ୧୦ ।

ଟିକିଟିକି ବଡ଼, ଟଙ୍କା ରଖିବ ପେଡ଼,
ଟାଣ ଲୋକଙ୍କଠାରୁ ଖାଉଥିବ ପଡ଼ (୧), ସଖୀ ଭଲ ଏ
ଟାଉଟାଉ ଆଖି, ଟମଟମ (୨) ଲୁଖି-
ଟାକରଖିଆ ସ୍ଥାନରେ ହୋଇଥିବ ସାକ୍ଷୀ, ସଖୀ ମନ୍ଦ ଏ । ୧୧ ।

ଠାଣିମାଣିକ ରୂପ, ଠାଆ ଜାଣି କୋପ,
ଠିକଣା ପାଇଲେ କରିବା ଧାପ, ସଖୀ ଭଲ ଏ
ଠାଆଘେଞ୍ଚେ ଭୋଜନ, ଠିଆରେ ଆଚମନ
ଠକ କାରବାରରେ ପ୍ରବେଶିଲେ ମନ, ସଖୀ ମନ୍ଦ ଏ । ୧୨ ।

ଡମ-ଗାଆଣି ଗୀତ, ଡାହାଣୀ ସଂଗତ
ଡାକବଳା ହୋଇବ ଯେବେ (୩) ବା ପଣ୍ଡିତ, ସଖୀ ଭଲ ଏ
ଡଗର (୪) ଲୋକ ପାଶ, ଡକାଇତଙ୍କୁ ବିଶ୍ୱାସ,
ଡାକବଚନ ପାଠକୁ କରିବା ପରିହାସ, ସଖୀ ମନ୍ଦ ଏ । ୧୩ ।

ଢିପାଶାଳ ପହଣି (୫) ଢଗ ବ୍ରହ୍ମ କାହାଣୀ,
ଢାଲ ଖଣ୍ଡା ଘେନି ସଂଗ୍ରାମେ ହଣାହଣି, ସଖୀ ଭଲ ଏ,
ଢାଲିଆ ଖୋସା, ଢିଙ୍କିଶାଳବସା,
ଢମ ପାଠୁଆକୁ କରିବା ପରଶଂସା, ସଖୀ ମନ୍ଦ ଏ । ୧୪ ।

ଆଣି ପାଣି ସରମ, ଅଣୁମାତ୍ର ସତ କର୍ମ,
ଅଣମୃଦୁଆ ସଙ୍ଗେ କରିବା ପରିଶମ, ସଖୀ ଭଲ ଏ,
ଅଣବଣୁଆସୀ ପୁରୁଷ, ଅଣେଇଲଦିଆ ଆଇଁଷ,
ଅଣେପୂରୁଷାକୁ କରିବା ପ୍ରୀତି-ଆଶ, ସଖୀ ମନ୍ଦ ଏ । ୧୫ ।

---

ପାଠାନ୍ତର—(୧) କଉଡ଼ି । (୨) ଟାଉଟାଉ ବଚନ ଟମଟମ ନୟନ, ଟାକରଖିଆ ସ୍ଥାନେ ସାକ୍ଷୀ ହେବା ପୁଣ । (୩) ତାଙ୍କଦେବା ଦନ୍ତ ତାଳମୂଳିଆ କ୍ୱାଥ, ଡାକବଳା ହୋଇ ଯେବେ ହେବଟି ପଣ୍ଡିତ । (୪) ଡିଙ୍ଗର । (୫) ଢିପାଶାଳକୁ ନିଃଶ୍ରେଣୀ ।

ଡଚଢାଲ ଶୁଝିବା, ଢାଡପର୍ଯ୍ୟ ବୁଝିବା,
ଡାକଡର୍କ ମଣି ରଣଭୂମିରେ ଯୁଝିବା, ସଖୀ ଭଲ ଏ,
ଗୁଣ୍ଡବଜା ଆଡ଼ତ, ଡରଦଆ (୧) ପ୍ରୀତ,
ଗୁଲାମୁର୍ଦ୍ଧାକାଙ୍କ ପ୍ରାସ୍ଥେକ ଭକତ, ସଖୀ ମନ୍ଦ ଏ । ୧୬ ।

ଥିଲଲୋକଙ୍କୁ ଆଶ, ଅଣ୍ଡା ମୁଲକରେ ବାସ,
ଥୋକେ ରଖି ଥୋକେ କରିବା ଗ୍ରାସ, ସଖୀ ଭଲ ଏ,
ଅସ୍ଥେ ନୋହିଲା ଚଭ, ଆଡ ରଖିଲା ବଭ,
ଥରପାଣିଆ ପୁରୋହିତ, ସଖୀ ମନ୍ଦ ଏ । ୧୭ ।

ଦଲ୍ୟଲ (୨) ରାଜନ, ଦରିଦ୍ରରେ ଦାନ,
ଦୁଷ୍ଟ ଲୋକର କାଟିବା ନାକ କାନ, ସଖୀ ଭଲ ଏ,
ଦୁର୍ବୁଦ୍ଧିଆ ମନ୍ତ୍ରୀ, ବଣିଆ, ବୁଣା, ତନ୍ତ୍ରୀ (୩)
ଦାଣ୍ଡଆ, ଦାରୁପିଆ, ଦରିଦ୍ରା ମହାନ୍ତ, ସଖୀ ମନ୍ଦ ଏ । ୧୮ ।

ଧରିଆସିଲା ବର, ଧନ ଅର୍ଜିଲା କୁମର,
ଧର୍ମ ଉପରେ ଦେଇଥିବ ଭାର (୪), ସଖୀ ଭଲ ଏ,
ଧକାଦିଆ ଦାନ, ଧକାରିଆ ଜୀବନ,
ଧୂଆଁ ଧୂଳ ପାଉଁଶ ମିଶି ବହିବା ପବନ, ସଖୀ ମନ୍ଦ ଏ । ୧୯ ।

ନଜ ବିଦ୍ୟା ପୋଷି, ନମିଖୀ ପୋଷି
ନୈଷ୍ଠିକ ବ୍ରାହ୍ମଣ ନର୍ଜଳା ଏକାଦଶୀ, ସଖୀ ଭଲ ଏ,
ନଷ୍ଟ ଗୋରେସା, ନଷ୍ଟୁର ଭାଷା
ନଜରେ ଥାଉ ଥାଇ ପରକୁ ପ୍ରତି-ଆଶା, ସଖୀ ମନ୍ଦ ଏ । ୨୦ ।

ପ୍ରତାପୀ ପାଳକ ରାଜା, ପାଣ ହେବା ହେଜା
ପଢନ୍ତ ବ୍ରାହ୍ମଣଙ୍କୁ କରିବା ପାଦପୂଜା, ସଖୀ ଭଲ ଏ,
ପୁରୁଣା ବାଇଗଣ, ପାପକଥା ଶ୍ରବଣ
ପାହାନ୍ତିଆ ନଣିରେ ରମଣ (୫) ସଖୀ ମନ୍ଦ ଏ । ୨୧ ।

---

ପାଠାନ୍ତର—(୧) ଡରଡରିଆ । (୨) ଦସ୍ମାଜ୍ଞ (୩) ଦଣିଆରୁଣା ତନ୍ତ୍ରୀ । (୪) ସଦା କରିବ ନର୍ଭର । (୫) ନଦ୍ରା ଓ ରମଣ ।

ଫୁଲ ଲଗାଇବା ସୁବାସ, ଫଳ ଭେଟାଇବା ଘଟାଇବା ଜଉତିଷ
ଫୁଟି ବିକଶିବା ନିର୍ମଳ ଯଶ, ସଖୀ ଭଲ ଏ,
ଫାଲ୍‌ଟା ବଚନ, ଫାଟିଗଲା ସୈନ୍ୟ
ଫାଟୁଆ ପାଇକଙ୍କ ଯୁଦ୍ଧଭୂମି ଅପମାନ, ସଖୀ ମନ୍ଦ ଏ । ୨୨ ।

ବୈଦ୍ୟ ଯଶସ୍ୱୀ, ବ୍ରାହ୍ମଣ ଉଦାସୀ
ବୋଧା (୧) ମହନ୍ତ ବ୍ରହ୍ମଚାରୀ ସନ୍ନ୍ୟାସୀ, ସଖୀ ଭଲ ଏ,
ବନ୍ଧୁ ହରପାଣିଆ (ହଇରାଣ), ବୈଷ୍ଣବ ଗୋସାଣିଆ (୨)
ସଖୀ ମନ୍ଦ ଏ । ୨୩ ।

ଭୋଜନ ଛଡ଼ରସ, ଭସ୍ମ ଆଉ ଯା-ଆସ,
ଭାରତ-ଭାଗବତରେ ସର୍ବଦା ଅଭିଳାଷ, (୩) ସଖୀ ଭଲ ଏ,
ଭାଟଙ୍କୁ ଅବୋଧ, ଭାରିଯା ପରେ କ୍ରୋଧ,
ଭଉଣୀ ଭଣେଇ ଭଣଜାଠାରେ ବିରୋଧ, ସଖୀ ମନ୍ଦ ଏ । ୨୪ ।

ମହତ ଲୋକଙ୍କୁ ଶରଣ, ମୃହାଁସିବା (୪) କରଣ
ମୁଗ ଶାଗଭାଜି ମାଛ ଚଉଣ, ସଖୀ ଭଲ ଏ,
ମଦପିଆ ବ୍ରାହ୍ମଣ, ମାତାପିତାଙ୍କୁ ଦୂଷଣ,
ମୂର୍ଖଲୋକଙ୍କ ଆଗେ ଶାସ୍ତ୍ର ବଖାଣ, ସଖୀ ମନ୍ଦ ଏ । ୨୫ ।

ଯଥାର୍ଥ କହିବା, ଯାତନା ସହିବା
ଯାବତ ଜୀବ କାହାକୁ ଯାଚକ ନୋହିବା, ସଖୀ ଭଲ ଏ,
ଯମକଷ୍ଟ ଅନୁଭବ, ଯୋଗୀଙ୍କୁ ପରାଭବ
ଯୁବାସ୍ତ୍ରୀ ହୋଇ ଯେବେ ନ ଜାଣଇ ଭାବ, ସଖୀ ମନ୍ଦ ଏ । ୨୬ ।

ରସିକଠାରେ ରସ, ଶତ୍ରୁଠାରେ ରୋଷ
ରାମନାମ ନିତ୍ୟେ ହୃଦଗତେ ଘୋଷ, ସଖୀ ଭଲ ଏ,
ରଜବନ୍ତି ସଙ୍ଗ, ରାଜା-ଆଜ୍ଞା ଭଙ୍ଗ
ରାଜ ଦିବସ ଅନୁକ୍ଷଣେ ମାୟା ମୋହ ପ୍ରସଙ୍ଗ, ସଖୀ ମନ୍ଦ ଏ । ୨୭ ।

ଲକ୍ଷ୍ମୀକାନ୍ତ ଗୃହ, ଲକ୍ଷଣବନ୍ତ ଦେହ
ଲୋଡ଼ୁଛି ଲୋଡ଼ୁଛି ପରୁଶବାର ସ୍ନେହ, ସଖୀ ଭଲ ଏ,
ଲୁବାଡ଼ିଆ ବଚନ, ଲମ୍ବିଚେରା ବିହନ
ଲୋଡ଼ା ପଦାଘରେ ହୋଇବା ହତଜ୍ଞାନ, ସଖୀ ମନ୍ଦ ଏ । ୨୮ ।

---

ପାଠାନ୍ତର—(୧) ଶୁଣିବା, । (୨) ମୁଖ ନୋହିବା । (୩) ଲୋଡ଼ା ପଦାର୍ଥରେ କରିବାରେ ହେଳନ । (୪) ସମ୍ମାନ ନ ପାଇ ଘରେ ଘରେ ଖାଇବା ।

ବାହାପିଟା କମାଇ, ବାବୁଚଢ଼ା ସିପାହୀ
ବଶ୍ୟ ଥିଲା ବନ୍ଧୁ, ଖାଇ, ସଖୀ ଭଲ ଏ
ବିଦେଶରେ ରମଣ, ବିଧବା ସ୍ତ୍ରୀଙ୍କ ରମଣ
ବିଦ୍ୟାନଗର ଛାଡ଼ି ଅନ୍ୟ ଦେଶେ ଭ୍ରମଣ, ସଖୀ ମନ୍ଦ ଏ । ୨୯ ।

ଶାସ୍ତ୍ର ପଢ଼ିଲା ନର, ଶିକ୍ଷା ଦେଇଲା କୁମର
ଶୋଭାବନ୍ତ ଲୋକଙ୍କ କୁଳଶଉଚ ଆଚାର, ସଖୀ ଭଲ ଏ,
ଶ୍ରୀବନ୍ତ ହୋଇ କୃପଣ, ଶାସ୍ତ୍ର ପଢ଼ି ଦୂଷଣ
ଶତ୍ରୁ ହାତେ ସମର୍ପି ଦେବା ନିଜ ଗ୍ରାମ, ସଖୀ ମନ୍ଦ ଏ । ୩୦ ।

ସଂଶୟ ଛେଦା ଗୁରୁ, ସୂତା କାଟିବ ସରୁ
ସିଦ୍ଧି ଜପାଇବ ପାରୁ ନ ପାରୁ, ସଖୀ ଭଲ ଏ,
ସେବା କରିବା ସୁଖ ନପାଇବା
ସନ୍ଧ୍ୟାକାଳରେ ପଢ଼ିବା, ରମିବା, ଶୋଇବା, ସଖୀ ମନ୍ଦ ଏ । ୩୧ ।

ଶ୍ୱଶୁରଘରେ ସ୍ଥିତି, ସବୁରି ସଙ୍ଗେ ଅପ୍ରୀତି
ସଂସାରଯାକର ଶୁଣିବ ଅପକୀର୍ତ୍ତି, ସଖୀ ମନ୍ଦ ଏ,
ଶଳା ଭଟୋଇ ସୁଖ, ସମସ୍ତ ଜାଣି ଦୁଃଖ
ସକଳ କଥା ଛାଡ଼ି ଶ୍ରୀଗୁଣ୍ଡିଚା ଦେଖ, ସଖୀ ଭଲ ଏ । ୩୨ ।

ହବିଷକୁ ଦହି, ହୀରା-ମାଣିକ ବାହି
ହରିନାମ ଗାଉ ଗାଉ ପିଣ୍ଡରୁ ପ୍ରାଣ ଯାଇ, ସଖୀ ଭଲ ଏ,
ହସି ହସି କହିବା, ହିଂସା ଶତତ ବହିବା
ହତ୍ୟାରେ ମାରେଣୀ ମାଂସରେ ଭାଗୀ ହୋଇବା, ସଖୀ ମନ୍ଦ ଏ । ୩୩ ।

କ୍ଷେତ୍ରରେ ନିବାସ, କ୍ଷତ୍ରିୟଙ୍କ ସାହସ
କ୍ଷଣ ମାତ୍ର ପ୍ରଭୁଙ୍କର ବୋଲାଇବା ଦାସ, ସଖୀ ଭଲ ଏ,
କ୍ଷୁଦ୍ର ବୁଦ୍ଧି ଲୋକର କ୍ଷାଇଆ ଶାକର
କ୍ଷମା ନଥିଲା ସାମନ୍ତ ମୁଣ୍ଡରେ ଟାକର, ସଖୀ ମନ୍ଦ ଏ । ୩୪ ।

ଲେଖିକା : ଶ୍ରୀମତୀ ପାର୍ବତୀ ବୈଷ୍ଣବୀ

## ରାଧା-ବିରହ ଚଉତିଶା

କହେ ରାଧା ଠାକୁରାଣୀ, କେଉଁ ଅପରାଧେ ମୁରଲୀପାଣି
କପାଁ ଆମ୍ଭଙ୍କୁ ତେଜିଲେ ପୁଣି, ସଜନୀ ଗୋ । ୧ ।
କ୍ଷଣେ ତାଙ୍କୁ ନ ଦେଖିଲେ, କ୍ଷଣେ ପିଣ୍ଡେ ପ୍ରାଣ ନ ରହେ ଭଲେ
ଖସେ ଲୁହ ହୃଦୟ ଉପରେ, ସଜନୀ ଗୋ । ୨ ।
ଗଲେ ମଥୁରା ଭୁବନ, ଗୁରୁ ହେଲଣି ବସନ-ଭୂଷଣ
ଗରଳ ପରାଏ ହେଲା ଅନ୍ନ, ସଜନୀ ଗୋ । ୩ ।
ଘଡ଼ିଏ ତାଙ୍କୁ ନ ଦେଖି, ଘଡ଼ିକେ କୋଟି ଯୁଗ ସମ ଲେଖି
ଘନଶ୍ୟାମ ବିନୁ ହେଲୁ ଦୁଃଖୀ, ସଜନୀ ଗୋ । ୪ ।
ଉଜ୍ଜ୍ୱଳ ଚନ୍ଦ୍ରବଦନ, ଉଲ୍ଲସଇ ଅଙ୍ଗ ଦେଖି ନୟନ
ଉପେକ୍ଷିଲେ କପାଁ ଜୀବଧନ, ସଜନୀ ଗୋ । ୫ ।
ଚତୁର ଅଟେ କହ୍ନାଇ, ବୃଣଦନ କଣ୍ଠ କଲେ କପାଇଁ
ଚତ୍ତେ ଏତେକ କପଟ ଥାଇ, ସଜନୀ ଗୋ । ୬ ।
ଛଇଳ ଅଟଇ କାହ୍ନୁ, ଛଳବୁଦ୍ଧି ଆଉ ନଗଲା ମନୁ
ଗ୍ରୁଣ୍ଡଗଲେ ଏ ଗୋପ ଭୁବନୁ, ସଜନୀ ଗୋ । ୭ ।
ଜନମକାଳରୁ ହରି, ଯେତେ ଯେତେ କୃତ୍ୟ କଲେ ମୁରାରି
ଯିବ କି ଏବେ ମନୁ ପାଶୋରି, ସଜନୀ ଗୋ । ୮ ।
ଝଗଡ଼ ସାରିଣ ଗଲା, ଝୁରି ମରିବାକୁ ଆମ୍ଭଙ୍କୁ କଲା
ଝିମିଟେ ମନେ ନ ପକାଇଲା, ସଜନୀ ଗୋ । ୯ ।
ଞସ୍ତେ ସତ୍ୟ ମୁଁ କହୁଛୁ, ଞମିଷେ ନପାରେ ତାଙ୍କୁ ମୁରୁଛି
ଞଣି ଢବା ହୃଦୟ ପୋଡ଼ୁଛି, ସଜନୀ ଗୋ । ୧୦ ।
ଟେକି ଶିରେ ବସାଇଲା, ଟେକ ଶ୍ୟାମବନ୍ଧୁ କରୁଣ୍ଡ ଦେଲା
ଟାଣପଣ ଆମ୍ଭ ସରିଗଲା, ସଜନୀ ଗୋ । ୧୧ ।
ଠାରି ନେଲା କୁଞ୍ଜବନ, ଠୁଳ ବୃନ୍ଦାଙ୍କନେ ମୋହିଲା ମନ
ଠିକ ନପାନ୍ତି ଯା ମୁନିଗଣ, ସଜନୀ ଗୋ । ୧୨ ।
ଡର କିଛି ନାହିଁ ତାଙ୍କୁ, ଡାକି ନେଲା କୁଳବଧୂମାନଙ୍କୁ
ଡାଳେ ରଖି ମୂଳ କାଟିବାକୁ, ସଜନୀ ଗୋ । ୧୩ ।

ଢଳ ଢଳ ବୁଲେ ହରି, ଢମାଲୀ ଗୀତେ ବଂଶୀନାଦ କରି
ଢମପଣ ଖଣ୍ଡିଲ ଆମ୍ଭର, ସଜନୀ ଗୋ । ୧୪ ।

ଅକ୍ରୂର ହେଲା ତରାଶ, ଅମ୍ଭ ବେନ ଚକ୍ଷୁ ଶ୍ରୀରାମ ହରି
ଆଣ୍ଟେ ନେଲା ସେହୁ ଖୋଳି କରି, ସଜନୀ ଗୋ । ୧୫ ।

ତ୍ରିଲୋକର ନାଥ ସେହୁ, ତାର ଗୁଣ ଗୁଣି ଜୀବନ ଯାଉ
ତନପୁରେ କଥା ରହୁଥାଉ, ସଜନୀ ଗୋ । ୧୬ ।

ଥରେ ସେ ସଙ୍କେତ କଲା, ଥିବୁ କୁଞ୍ଜରେ ଆସିବି ବୋଇଲା
ଥିଲୁ ବସି ଯାମିନୀ ପାହିଲା, ସଜନୀ ଗୋ । ୧୭ ।

ଦୟାସାଗର ଶ୍ରୀହରି, ଦୁଇ ହସ୍ତେ ମୋର ପୟର ଧରି
ଦସ୍ୱିନରେ ଚନ୍ଦ୍ର ନେଲା ହରି, ସଜନୀ ଗୋ । ୧୮ ।

ଧର୍ମ ଯେବେ ସତେ ଥିବ, ଧାଇଁ ଗୋପୀନାଥ ଗୋପେ ଆସିବ
ଧନ ଜୀବନ ଆମ୍ଭଙ୍କୁ ଦେବ, ସଜନୀ ଗୋ । ୧୯ ।

ନିଶିବାସରେ ମୋ ମନ, ନିରବଧି ବ୍ୟାକୁଳ ଜୀବନ
ନନ୍ଦସୁତ ନଷ୍ଟେ ନେବ ପ୍ରାଣ, ସଜନୀ ଗୋ । ୨୦ ।

ପୂତନା ଧାଇ ଆସିଲା, ପୟରେ ବିଷ ଭରି ପିଆଇଲା
କ୍ଷୀର ବୁଲେ ପ୍ରାଣ ଶୋଷିନେଲା, ସଜନୀ ଗୋ । ୨୧ ।

ଫାଟିଯାଉଛି ହୃଦୟ, ଫନ୍ଦା କରିବାକୁ ନାହିଁ ଉପାୟ
ଫେଡ଼ିବ କେ ଏ ଦୁଃଖ ସଂଶୟ, ସଜନୀ ଗୋ । ୨୨ ।

ବୃନ୍ଦାବନେ ବସ୍ତ୍ରା ରଖି, ବଂଶୀନାଦେ ନେଲା ଆମ୍ଭଙ୍କୁ ଡାକି
ବଂଶୀ ସିନା ଅଛେ ଅମ୍ଭ ସାକ୍ଷୀ, ସଜନୀ ଗୋ । ୨୩ ।

ଭବତ୍ରାହୀ ନାମ ବାହି, ଭଲ ଭଣ୍ଡିଗଲେ ଗୋପ-କହ୍ନାଇ
ଭଲେ ମଥୁରା ରହିବା ପାଇଁ, ସଜନୀ ଗୋ । ୨୪ ।

ମଥୁରାନାରୀଙ୍କ ଭାବ, ମାଧବ ଛାଡ଼ି କି ଗୋପେ ଆସିବ
ମଲେ ଆମ୍ଭେ ତାର କିସ ଯିବ, ସଜନୀ ଗୋ । ୨୫ ।

ଯିବାବେଳେ କହିଗଲେ, ଯାତ୍ରା ଦେଖି ଗୋପେ ଆସିବି ଭଲେ
ଜଗନ୍ନାଥ ବାହୁଡ଼ା ନଇଲେ, ସଜନୀ ଗୋ । ୨୬ ।

ରଙ୍କହସ୍ତେ ଥିଲା ଧନ, ରିପୁପଣେ ଖଣ୍ଡି ନେଲା ବହନ
ରାଜଦବା ଝୁରୁଅଛି ମନ, ସଜନୀ ଗୋ । ୨୭ ।

ଲାବଣ୍ୟ ବଦନ ଗୋଟି, ଲବେ ନ ଦେଖି ଆଖି ଯାଏ ଫୁଟି
ଲଜ୍ଜା ଛାଡ଼ି ଅନାଉ ଥାଉଁଟି, ସଜନୀ ଗୋ । ୨୮ ।

ବୃନ୍ଦାବନ ଲୀଳା ଯେତେ, ବଷ୍ଣୁର ରାଧା ସନ୍ତାପିତ ଚିତ୍ତେ
ବୋହୁଛି ନେତ୍ରୁ ନୀର ନିରତେ, ସଜନୀ ଗୋ । ୨୯ ।

ଶ୍ରୀକୃଷ୍ଣଙ୍କ ଗୁଣ ଗୁଣି,        ଶ୍ରୀମତୀ ଲେଖିପତ୍ରଲେ ଧରଣୀ
        ସତେ ବାତେ ରମ୍ଭାବୃକ୍ଷ ଠାଣି, ସଜନୀ ଗୋ । ୩୦ ।
ହୃଦରେ ହଠେଣ ବାଳୀ,        ସୁବାସ ଜଳେ ଶ୍ରୀମୁଖ ପଖାଳି,
        ଶୋକ ଛୁଡ଼ ଛୁଡ଼ ବୋଲି ବାଳୀ, ସଜନୀ ଗୋ । ୩୧ ।
ହରି ପଦ୍ମପାଦେ ଧ୍ୟାନ,        ହଜାଇଲେ ତହିଁ ମନ-ଚୈତନ୍ୟ
        ହାସମୁଖୀ ବ୍ରଜାଙ୍ଗନାଗଣ, ସଜନୀ ଗୋ । ୩୨ ।
କ୍ଷମେ ବୈଷ୍ଣବୀ ପାଙ୍ଗତୀ,        କ୍ଷମାକର ଦୋଷ ହେ ଲକ୍ଷ୍ମୀପତି,
        ଖଣ୍ଡାଅ ଗୋପୀ ଭୁଲେ ମୋ ମତି, ସଜନୀ ଗୋ । ୩୪ ।

---

ଲେଖକ : ବଳଭଦ୍ର ଭଂଜ

# ଜଳଧର ଚଉତିଶା

( ଶୃଙ୍ଖଳା ଚଉତିଶା )

ନାୟକର ଉକ୍ତି

( ରାଗ—କାମୋଦୀ, ହଂସଦୂତ ବାଣୀ )

କାନ୍ତା ଚନ୍ଦ୍ରାମଜ୍ଜନ ଜନ ସଘନ ଘନ ଦେଖି ଦୁଃଖିତ ଦର୍ପକରେ
କରେ ତାହାଙ୍କୁ ସ୍ତବ ବ୍ୟସ୍ତେ ବ୍ୟଗ୍ର ସ୍ୱଭାବ ଭାବ ଅସହ୍ୟ କାର୍ଯ୍ୟ କରେ
    ହେ ଜଳଧର !        କରେ ବନସ୍ତେ ଯୋଡ଼େ କର
        କରଶ୍ରେଷ୍ଠଙ୍କୁ ଦୟା କର,
କରମରୁ ମୋହର ହରସ୍ତନା ଅନ୍ତର ତରସ୍ତ ନ କରିବ ଖର ହେ । ୧ ।

ଖର ଯିବନ୍ତି ଜୀବ ଜୀବନ ଯିବ ଯିବ ତୃଣୀ ତେଜି ଭୋଗ-ସୁଖର
ଖର ଜଳେ କୂମ୍ଭର ଉରଜା କଳେବର ବଢ଼ଷା କାରଣେ ଦୁଃଖର
    ହେ ଜଳଧର !        ଖର କରଜା ସୁମୁଖୀର,
        କ୍ଷୀରୋଦ ନେଲେ ପୂର ନୀର
କ୍ଷୀରରେ ଅମ୍ଳରସ ରସମାନ ବରସ ରସ ହେବନ ସୁଅଙ୍ଗୀର ହେ । ୨ ।

ଗିର ତୋ ଭୟଙ୍କର କରନା ତା ପ୍ରଖର ଖର ହୋଇ ହର ଦୁର୍ଗଢ
ଗଢ ନଥିବା ମାର ମାର-ଶରୁ ହୁଙ୍କାର ଧାତ୍ରରେ ନୋହଣ ସଂଗଢ
ହେ ଜଳଧର ! ଗଢରେ ଦନ୍ତୀ ଯେ ନଗଣେ
ଗଣେଣ ସେ ସ୍ୱନ୍ଦସାପଣେ,
ଘଣେଶ ଗୁଣେ ଗୁଣେ କୃଷ୍ଣ ଭ୍ରମର ଗୁଣେ ଗୁଣେକ ଘେନଣ ଆଘ୍ରାଣେ ହେ ।୩।

ଘ୍ରାଣେ ସୁଗନ୍ଧବନ୍ଧ ବନ୍ଧଇ ରନ୍ଧରନ୍ଧ ହୋଇ ତେଣୁ ସେ ତାପଘନ
ଘନକେଶିନୀ ଗୁଣ ଗୁଣ ତୁ ପୁଣ ପୁଣ ସେ ତୋର କେମନ୍ତ ଜଘନ
ହେ ଜଳଧର ! ଘନଜଘନା ପ୍ରୀତିଘେନା,
ଘେନା ରଖ ତୁ ଲକ୍ଷ ଘେନା
ଘେନାଘେନରେ ନ ଦେଖିଲେ ତୋ କରେ କରେ ଲେଖ ଦେବ ପ୍ରସନ୍ନାନନା ହେ ।୪।

ନ ନାଶ ଆଶ ଆସ ପଦେ ପ୍ରକାଶ କାଶ-ହାସୀ ପାଶେ ହୋଇ ବନୀତ
ନତ ନୀତରେ ତରେ ମୁଦେ ଘେନ ଲେଖରେ ଖରେ ଚଳ ନୋହି ଉନ୍ନତ
ହେ ଜଳଧର ! ନତନୁ ତାପ କର ନତ,
ନତରଙ୍ଗୁ ସୁନସୁନୀତ,
ନିତମ୍ବିନୀର ନୀରସକୁ ସଂହର ହରଷରେ ମଗ୍ନ ହେଉ ତା ଚିତ୍ତ ହେ ।୫।

ଚିତ୍ତକୁ ପରଶିବ ଶିବମୋହିନୀ ଦେବ-ଦେବାଦପଣେ ସୁରୁଚିରେ
ଚିରେ ସ୍ମର ମୁଖରେ ଖରେ ସ୍ମର କ୍ଲେଶରେ ସରେ ସେ ଶୋକନଦୀ ଚିରେ,
ହେ ଜଳଧର ! ଚିରେ ସେ ନଖେ ଛିଢ ଚିରେ
ଚୀରେ କାମ ପାଶ ବନ୍ଧରେ,
ଚ୍ଛରେ ଦାରତାରତା ହୋଇବନ ବନିତା ନିତା ପୁଛୁଥିବ ମୋ ଇଚ୍ଛାରେ ହେ ।୬।

ଛୁରେ ମୁଁ ହେଲି ସମ ସମସ୍ତ ରୂପେ ଶ୍ୟାମ ଶ୍ୟାମନେଈ ଲଭି ଉଚ୍ଛନ୍ନ
ଛନଛନ ତ ମନ ମନମଥ ମଥନ କରୁଥିବ ଜରତେ ଛନ୍ନ
ହେ ଜଳଧର ! ଛନ୍ନ ସ୍ନେହ ଯୁବା-ଲଞ୍ଛନ
ଛନରେ କଣ କେଉଁ ଛନ୍ନ,
ଛ-ନବ-ବୟସୀର ସାର ବୟସ୍ୟା ବାର ବାର ହୋଇ ଦୁଃଖେ ମଜ୍ଜନ ହେ ।୭।

ଜନମୁ ଥିବ ଖେଦ ଖେଦଇ ଯେ ପ୍ରମୋଦ ମୋ ଦଶା ଯୋଗାଲି ହେଜବ
ଜୀବନ ଧବ ଧବ ହୋଇବ ବୋଲି ଜୀବ ଜୀବନ ନୟନୁ ତେଜବ
ହେ ଜଳଧର ! ଯିବ ସନ୍ଦେଶ ନ ହଜାଇ
ଜାଇ ପଦ୍ମ ତଳେ ସେ ଯାଇ,
ଯାଇ ତା ଆଳି ଆଳି ତୋଳି ସମ୍ଭାଳି ଭଲି ଆଣୁଥିବେ ସେ ଯେ ବୁଝାଇ ହେ ।୮।

ଝାଇଁ ସେ ମାରୁ ମାରୁ ଥିବ ଏ ଝୁରି ଝୁରି କାନ୍ତରେ ନଥିବ ଝଟଝଟ
ଝଟକେ ଯେ ବିଦ୍ୟୁତ ଦ୍ୟୁତି ଉନ୍ନତ ନତ କରି ଦିଶଇ ଝଟ ଝଟ
ହେ ଜଳଧର ! ଝଟତି ସେ ଅଙ୍ଗ ଝର୍ଝର
ଝର ପରସ୍ୱେଦ ଝର ଝର,
ଝରନ୍ତେ ନବ ବାଳୀ ବାଳୀ ପାଦ ମଞ୍ଜୀର ଶୁଭିବେ ପଣ୍ଡେ ସିଞ୍ଚି ନୀର ହେ ।୯।

ଞରବଧି ମୋ ଭବ ଭବନାରୁ ଅଭାବ ଶୋଭା ଭାଜିବ ଭାବିନୀର
ଞରସେ ସାର ସାର ସାରସ ଗମନାର ନାରଖାର ହେ ଶୋଭା ନୀର
ହେ ଜଳଧର ! ଞରଦାବଜ ରଜ ମୃଣାଳ
ନାଳମଣି ବ୍ୟାଳ ଅନଳ,
ଞରଦ ପୂର୍ବପରି ପରିତାପ ଆଚରି ତରିବ-ପ୍ରମାଦ ପଟଳ ହେ ।୧୦।

ଟଳ ଟଳ କୃଶରୁ ସରୂପେ ହୋଇ କରୁ କରୁଥିବ ଦୂର କଟକ
ଟଙ୍କଧର-ଅରିର ଇରଷା ଭରେ ଭରିଥିବ ମାଝ କଣ୍ଠେ ତାଟଙ୍କ
ହେ ଜଳଧର ! ଟକରେ ମୋ ସୁକୃତ ଟୀକା
ଟିକାକରେ ଲଗି ନାଟୀକା
ଟିକା ହେବନି ଶୋକ × × × କରକରଦନ ନୈଷ୍ଠିକା ହେ ।୧୧।

ଠକାନନୁ ହରଷ ରସ ବିଶେଷ ଶେଷ ହେବନି ବିରହୋତ୍କଣ୍ଠାରେ
ଠାରେ ସଜନୀ ବାରେ ବାରେ ପରସ୍ପରରେ ମୋହୁଛୁ ହେଜନ୍ତେ ସେଠାରେ
ହେ ଜଳଧର ! ଠାରେ ଠାରିବ ସେ ସଣୁକ
ଠକ ତ ନୁହନ୍ତ ପୁସ୍ତକ,
ଠକନ୍ତ ମତେ ମତେ ବିନସ୍ତ ରତେ ରତେ ମତାଇ ତେଣୁ ମୁଁ ପୀଡ଼ିକ ହେ ।୧୨।

ଡଙ୍କନାଶନ ସନକାଦି ପ୍ରଧାନ ଧ୍ୟାନଗମ୍ୟ ହରିବେ ଏ ପୀଡ଼ାକୁ
ଡାକୁଛୁ କଷ୍ଟକର କରନ୍ତୁ କୃପାକରିବରଣୀ ନ ଭକ୍ଷୁ ଖେଡ଼କୁ
ହେ ଜଳଧର ! ଡଙ୍କୁଣୀ କନ୍ଦର୍ପ କଡ଼କା,
ଡକାକରେ ବାନ୍ଧିଛୁ ଫଡ଼କା
ଡକାଡ଼କରେ କାରେ ବୋଲିବେ ଧୀରେ ଧୀରେ କରିବ ଧଇର୍ଯ୍ୟ ଦୃଢ଼କା ହେ ।୧୩।

ଢକା ବଜାଇ କାମ କାମନା କରେ ବାମ ବାମନେଜ୍ଞୀ ଏ ରଣଢାଲ
ଢାଲସ୍ତନା ନବୀନା ବନା ସୁମନା ମନାଇଲେ ହେଁ ଫୁଟିଯିବ ଢୋଲ
ହେ ଜଳଧର ! ଢୋଲ ସେ ବଜାଇ ସୁଢ଼ାଳ,
ଢଳଇ ନୁହେଁଇ ଅଢ଼ଳ
ଢଳଢଳ କମଳ ମଧ୍ୟେ ଉଜ୍ଜ୍ୱଳ ଜଳ ପ୍ରାପ୍ତେ ଏ ପ୍ରାଣ ହୋଏ ଅଳ ହେ ।୧୪।

ଅଳକାଶୋଭିତାଙ୍କ ନକ୍ର ଲିଭକ ଶ୍ରୀକ ଛେଦବ ରସ ଶାସ୍ତ୍ରେ ଆଣି
ଆଣି ମୋ ନକର୍ମାଇ ପାଇ ଶ୍ରମ ବସୋଇ ଶୋଇବ କୋଳେ ହୋଇ ଆଣି
ହେ ଜଳଧର ! ଅଣି × × ମୁଁ ଆନ
ଆନନ୍ଦେ ପକାଇଲେ ଆନ,
ଆନତ ନତ କର କରି ଗତ-ସୁନ୍ଦରୀ ଦଶା ଭୁଚେ ହେବ ଉଗ୍ରନ ହେ ।୧୫।

ତା ନୟନ ସଙ୍ଗତ ଗତ ମୋର ଉନ୍ନତ ନତ ହେଲଣି ବିପତ୍ତିରେ
ତାରେ ରତପତର ତିରସ୍କାର ନ କର କର ଗମନ ସୁମତରେ
ହେ ଜଳଧର ! ତାରେ ନେଇ ଲଗାଅ ତଶ
ତଣ ଶୋକ ଜନ୍ତୁ ତରୁଷ
ତୁରିତେ ପଢ଼ି ପଞ ରଖ ରେ ଶତପଞ-ପଞନେତ୍ରୀ ପଶୁ ନ ଥିର ହେ ।୧୬।

ଥିର ଗଲାନ ତନୁ ତନୁଦଶା ବଢ଼ୁନୁ ସ୍ଥାନୁ ବଲିଲନ ଏଥିରେ
ଥିରେ ନ ରହେ ମତ ମତକ ଚନ୍ଦ୍ର ଚନ୍ଦ୍ର କ୍ରମତ କେଳତନାଥରେ
ହେ ଜଳଧର ! ଥରେ କରାଅ ଚଉ ସ୍ଥିରି
ସ୍ଥିରବର ନୋହୁ ବଥିରି
ସ୍ଥିରରେ ମୋ ଭରସା ରସାଳସା ସୁରସା ରସାର୍ଦ୍ର ହୃଦସ୍ଥ ବୃନ୍ଦ-ରି ହେ । ୧୭ ।

ଦରଶି ସୁକୃପାରୁ ପାରୁଣେ ଥିଲେ ତାରୁ ତରୁଣ ପୟୋଷ୍ଟୀ ମୋଦରେ
ଦରେ ସ୍ପଷ୍ଟ ସୁନ୍ଦର କରଇ ପରିକର କରମ ଉଭସ୍ଥ ଆଦରେ
ହେ ଜଳଧର ! ଦରେ ତା ନ ହେବେ ହୃଦର
ଦରକଣ୍ଠୀ ପ୍ରାଣସୋଦର
ଦରଶୀଭୂତେ ଭୂତେ ଭୂତେଶ ଭୂତ ମତେ ଦେବାରୁ ହେବଟି ଅଧର ହେ ।୧୮।

ଧରମ ବଳ ବଳ ଥିଲାକୁ ପ୍ରେମବଲ୍ଲୀ ବଳୀ ରଞ୍ଜନ ବ୍ୟାଧସି
ଧରଣୀଶୋଭି ଶୋଭି ଅଙ୍ଗ ହେଲା ବଲ୍କଶି ଲଭ ମୁଁ ହୋଇଲି ଉଦାସ
ହେ ଜଳଧର ! ଧର ତାହା କାମ କ୍ରୋଧନ
ଧନ ବର୍ନୁ କରେ ନିଧନ,
ଧନଦ ପଦପଦ ତଳେ ତଳେ ବିପଦ ପଦତା ଅବଶ୍ୟ ଘେନଣ ହେ । ୧୯ ।

ନନଦ କଲେ ଭେକ ଭକଭକ ଶାମ୍ବୁକ ମକମକ ଘୋଷ ଧ୍ୱନିରେ
ନାରେ ଦେଇ ନୟନ ଅନବ ଛିନ୍ନ ଭିନ୍ନ ଭିନ୍ନ ହେବନି ମଦନରେ
ହେ ଜଳଧର ! ନରେଶସୁତା ରଜନୀରେ
ନିରେଖି ମୋତେ ସ୍ୱପନରେ
ନରେ ମୁକତ କଣ୍ଠ ମୋ ମଣିବ ସୁଦନ୍ତୀ ଦନ୍ତୀଦନ୍ତ ପଲ୍ୟଙ୍କ ପାରେ ହେ ।୨୦।

ପରତେ ବୋଲି ଜାଣୁ ଜାଣୁ ମୁଁ ଏ ନଶାଣୁ ଶାଣୁଥିବ ଶର କୋପରେ
ପରେଣି ରଥପଥ ପଥତ ନାଥ  ନାଥ ପଦ୍ମିନୀ କ ଦହେ ତାପରେ
ହେ ଜଳଧର !  ପରେ ତଙ୍ଗ ରସେ ଭୂପାଳ
ପାଳନେ ଅଙ୍ଗଦେଶ ଫଳ
ପଲକ ଥିବ ନାହିଁ ନାହିଁ ମୋ ଆତ୍ମା ରହୁ ରହୁ ରୁ ହୋଇଲେ ବିଫଳ ହେ ।୨୧।

ଫଳଦ X X X X ସ୍ତନଫଳ
ଫଳକ X X X X ପ୍ରାଣେ ଫୁଲ
ହେ ଜଳଧର !  ଫୁଲ ଚମ୍ପାଙ୍ଗୀ ତାପ ଛୁଟେ
ଫୁଟେ ଯଥା ମଲ୍ଲୀ ଅଷ୍ଟ ଟୁଟେ,
ଫୁଟେଣି ଫାଟି ତାର ତାର କରୁ ବାହାର ହାରମାନଙ୍କ ରସେ ବାଟେ ହେ ।୨୨।

ବାଟେ ରୁ ଯାଉଁ ଯାଉଁ ମୃତ୍ୟୁ ନ ପାଉଁ ପାଉଁ ମୋ ହସ୍ତାକ୍ଷର ସ୍ୱମାବର
ବରଷା କାଳ କାଳରୂପ ତତ୍କାଳ କାଳଧର ସାମାନ୍ୟ କଳେବର
ହେ ଜଳଧର !  ବଚନ ପ୍ରାଣବାନ୍ଧବୀର
ବିରହେ ରହୁଁ ବ୍ରତବାର
ବାରଣ କର କରଗତ ତାହାର ହାର ହୃଦ ସକଳ ଶୋକଭାର ହେ । ୨୩ ।

ଭାର ଜୀବନ ମଣି ମଣିମାଳ ରମଣୀ ମଣି ବିଶ୍ୱଭବନ ଭୋଗୀ
ଭୋଗୀ ହେଲା ଶୋକର କରଜ ଶୋଣିତର ହରଷଦାୟିନୀ ଶୁଭାଙ୍ଗୀ
ହେ ଜଳଧର !  ଭାଙ୍ଗିଲି ଯେ ସୁଖ ବିଭବ
ଭୋଗ କରୁ ସେ ଦୁଃଖଭୋଗ,
ଭାଗ୍ୟ ଏ ଖେଦେ ଟେଦେ ଭାସିଲି କାମ-ନଦେ ନ ଦେଖି ପ୍ରିୟା ଉତ୍ତମାଙ୍ଗ ହେ ।୨୪।

ମାଙ୍ଗଲ୍ୟାଷ୍ଟକ ବାଣୀ-ବାଣୀ ବୀଣାର ଆଣି ଆଣି ଯେ ଭଙ୍ଗେ ଉପମାରେ
ମାରେ କହେ ତା ବାମା ବାମାଙ୍ଗିନୀ ସୁଷମା ସମାନ କର ମୋ ନାମରେ
ହେ ଜଳଧର !  ମରେ ଲଜେ ସେ ଅଯମରୁ
ମରୁତ ପଦ୍ମାକ୍ଷୀ ଉମାରୁ,
ମାତ୍ରୁ ଅଧିକ ରୂଳା ରୂଳାଙ୍ଗୀ ବାଳା ବାଳା X X ବଜ୍ରରୁ ହେ । ୨୫ ।

ଯରୁ ମନମଥର ଥରକୁ ଥର ଥର ଦହହେଉଥିବ ତା ଜୀବ
ଜୀବନବନ୍ଧୁ ବନ୍ଧୁ ବିମ୍ବୋଷ୍ଠୀ ରସସିନ୍ଧୁ ସିନ୍ଧୁର ଗଢକ ସର୍ଜିବ
ହେ ଜଳଧର !  ଯିବ ଉଛରେ ବିରଜନ
ଜୀବ ମୋ ଧନ ଚେତିବ,
ଯିବ ଦୁର୍ଦ୍ଦଶା ଗନ୍ଧ ଗନ୍ଧସୁତ ନଗନ୍ଧ ଗନ୍ଧଣେ ରତ ମୋ ଗରବ ହେ । ୨୬ ।

ରବର ହୃତହୃତ ହମିଷରେ ହୁଅ ତ ଅନ୍ତର ହୋଇ ଏ ବିରସ
ରସରେ ରସି ରସିକଣୀ ସୁଭାଷୀ ସ୍ୱେଚ୍ଛେ ତୋଷୁ ଲବ ହୋଇ ବରଷ
  ହେ ଜଳଧର ! ରସବନ୍ତୀ ଏ ଜ୍ୱର ରସ
  ରସ ଏଥିକ ଏ ହରସ,
ରସ ବିଟପୀତରେ ତରେ କାମ-ଶ୍ରହରେ ହରେ ମୋ ସମସ୍ତ ଉଲ୍ଲାସ ହେ । ୨୭ ।

ଲସ୍ୟ ଯେ ଶିଖୀ ଶିଖୀ କରୁଥିବେ ତା ଦେଖି ଦୁଃଖିତେ ଚରଣ ଅଲତା
ଲତାକୁ ଚଞ୍ଚଳାକୁ ଯାକୁ ଭାବ ସ୍ୱଚ୍ଛକୁ ତନୁ କରିବ ରସଲତା
  ହେ ଜଳଧର ! ଲତାରେ ହେରି ଭୃଙ୍ଗଲୀନା
  ଲୀଳାସ୍ପିତାଙ୍ଗୀ ହେବ ଲୋଳା,
ଲୋଳାପାଙ୍ଗୀର ଗୀର ଯେହ୍ନେ ଥିବ ପ୍ରସ୍ଫୁର ସ୍ଫୁର କ ପେଷିବ ଅବଳା ହେ । ୨୮ ।

ବଳାଇ ଶୋକେ ଟଣ୍ଡ ଚଣ୍ଡବନରେ ମିତ ମିଥିଲ ମାଘ କନ୍ଥ ବାରି
ବାରି କହ ବିଶ୍ୱାସ ଶ୍ୱାସ ବୋଲିବ ଇଶ ବର ବୋଲି ତାପ ହବାରି
  ହେ ଜଳଧର ! ବାରିଜବାସିନୀ ଏ ବଳା
  ବଳା ହେଲ ଦୁଃଖ ପ୍ରବଳା,
ବଳା ପାଦେ ଖଞ୍ଜିବି ଯିବ ଝଲକ ଦେବ ଦେବୀ ଭେଟାଇବେ ସୁଶୀଳା ହେ । ୨୯ ।

ଶିଳା ହେଲ କାସ୍ଥକ ଅକରମସ୍ପୂର୍ଶକ ବକ ଲୋକକୁ ସ୍ମରଣରେ
ଶରେ ଶରୀର ସାର ସାରଙ୍ଗ ପରିକାର କାରଜ ହେଉରୁ ବଣରେ
  ହେ ଜଳଧର ! ସରେ ଚନ୍ଦ୍ରା ଯଥା ହଂସରେ,
  ସ୍ମରେ ମୁଁ ତଥା ନାଶ୍ୱଶରେ ।
ହରେବଣାରମଣ ମଣଇ ଶୁଣ ଶୁଣ ରଖିବେ ମୋତେ ଏ ସଂସାରେ ହେ । ୩୦ ।

ସାରେ ମୁଁ ହୋଇ ଲେଖା ଲେଖାଲି ମଧ୍ୟେ ଶିଖା ଶିଖାବାନ ପଶି ପ୍ରସାରି
ସାରି ସକଳ ତାପ ତା ପଛେ ଥିବ ଆପ ଆପଣା ପ୍ରତିବିମ୍ବ ସରି
  ହେ ଜଳଧର ! ଶେଷରୁ ଜୀବନ ନସରୁ
  ସରୂପେ ଯିବ ବଷ ସରୁ,
ସରୁମଧ୍ୟା ଆଶ୍ଳେଷ ଶ୍ଳେଷ ଯେହ୍ନେ ପ୍ରବାସ ବାଧେରେ ନବାନ୍ଧ ବିସରୁଁ । ୩୧ ।

ସବୁବାସ ପଙ୍କତ ବଉ ଭାବିତ ବ୍ରତ ଚେତନବନ ହୋଇ ଦୂଷିତ
ଶୀତଳାଙ୍ଗୀ ତା ତପ ତପନା ତପ ତପନାଲଙ୍କାରେ କରି ଭୂଷିତ
  ହେ ଜଳଧର ! ସିତକଳମୃଣୀହାସିତା,
  ସିତାବଚନା ସୁହାସିତା
ସୀତାପତି ପତିର ତାର ତାରକାକର କରନ୍ତୁ ଯେହ୍ନେ ବିମୋହିତା ହେ । ୩୨ ।

ହତାକର ମନର ନରପପୃତାବର ବରଦା-ହୃଦୟବହ୍ନାସ୍ୱ
ହାର ଜୀବ ଯା ଅଟ୍ଟଦ୍ରାକ୍ଷୀ କାହ୍ନିଙ୍କ ଇଚ୍ଛି ନୋହେ ଏକା ତାହା ସଂହର
ହେ ଜଳଧର,    ହର ଦୁଃଖ ଏ କାଳେ ହର
ହରତେ ଅଇଲ ବହାର,
ହରଦ୍ରାଙ୍ଗୀରେ ମୁଦ ମୁଦେ ଦେଇ ସୁହୃଦ ହୃଦେ ଯେନ ସ୍ୱପେ ଶଙ୍ଖାର ହେ । ୩୩ ।

କ୍ଷାରତେ ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ରାଙ୍ଗଲେ ପଙ୍କିତ କତବେ ସୁଖ ହିଁ ସାକ୍ଷାତ
କ୍ଷାତ ସ୍ୱପ୍ନରେ କାନ୍ତ କାନ୍ତ ଦେଖି ମୁଦ ତ ଦନ୍ତଶୋଷ୍ୱର ଅଙ୍ଗକ୍ଷତ
ହେ କାନ୍ତକାନ୍ତା !    କ୍ଷତମାଳକାନ୍ତ ରକ୍ଷଣ
କ୍ଷଣଦାକୁ ମଣିଲେ କ୍ଷଣ,
କ୍ଷଣବୁଚ ବୁଚର ବୁଚର ପଦେ ବଳଭଦ୍ର ଭଞ୍ଜ ରାଜ ଶରଣ ହେ । ୩୪ ।

---

ଲେଖକ : ବନ୍ଧ ଦୁର୍ଗେଶ

## ବର୍ଷା-ବିରହ ଚଉତିଶା

( ରାଗ—ଗଡ଼ମାଳଆ )

କଂଜନେତ୍ର (୧) ଘନ ବୃନ୍ଦ,    କହନ୍ତ ପ୍ରିୟାକୁ କୋଳେ ବସାଇ ସେ
କର ଚବୁକରେ ଦେଇ ରେ ।
କୁଂଦ-କଳିକା-ରଦନା,    କଳା ଜଳଧରଖେଳାକୁ ଅନା ରେ
କି ଏ ବିଦେଶୀଙ୍କ ପ୍ରାଣଘେନା ରେ । ୧ ।

ଖଞ୍ଜନାକ୍ଷୀ ଘନ ଆଳି,    କ୍ଷ୍ୱେଡ଼ଧର (୨) ପ୍ରାୟ ପ୍ରବଳେ ଖେଳି ରେ
ଖମଣ୍ଡଳକୁ (୩) ଦେଲାକ ଗିଳି ରେ ।
କ୍ଷୀଣହଦସ୍ୱ ଚଞ୍ଚଳେ,    କ୍ଷଣପ୍ରଭା (୪) ରସନାକୁ କ ଯ୍ୱଳେ ରେ
କ୍ଷୀରବୃଷ୍ଟି ବ୍ୟାଜେ (୫) ଢାଳେ ରେ । ୨ ।

---

(୧) କଞ୍ଜନେତ୍ର—ଶ୍ରୀକୃଷ୍ଣ । (୨) କ୍ଷ୍ୱେଡ଼ଧର—ବିଷଧର, ସର୍ପ । (୩) ଖମଣ୍ଡଳ—ଆକାଶ । (୪) କ୍ଷଣପ୍ରଭା—ବିଜୁଳି । (୫) ବ୍ୟାଜ—କପଟ ।

ଗର୍ଜନ ଛଳେ କହଇ, ଗିରୀଶରିପୁ (୧) ପରାଣକୁ ଦହୁ ରେ
ଗୃହୁ ନ ତେଜିବ କେନ୍ଦ୍ର ରେ ।
ଗଇରିକ ସୁବଦନୀ, ଗଳାମାଳା ଗୁ ତ ଏ ମୋର ଯେନ ରେ
ଗୋପ୍ୟ ନୋହିବୁ ଆଉ ମାନିନୀ ରେ । ୩ ।

ଘନ ସାହାରେ ଢମିର, ଘର କଲ୍ଲ ରସା ଗଗନ ଧରି ସେ
ଯେହ୍ନେମ ବିଯୋଗୀ ଶିଷ୍ୟ ରେ ।
ଘଞ୍ଚ ପୀନଉରଜା, ଯେହ୍ନ ଏ ଅମ୍ବରେ ଏ କାମରାଜା ରେ
ଘୋଟି ରହୁ କରୁଛୁ ଡରଜା ରେ । ୪ ।

ଞାରଦ କି ମଣ୍ଡକଟୀ, ଞଷ୍ଟେ ବକାଳିକା ଦଶନ ପରି ସେ
ଞାରବୃଷ୍ଟି କିବା ମଦବାରି ରେ ।
ନବନଳୀନ ଈକ୍ଷଣା, ନାହିଁ ଏ ବନେ ଆନ ମୋ ଜଣା ରେ
ଞରେଖିଲେ ଧୃତି କରେ ବଣା ରେ । ୫ ।

ଚାମୀକର (୨) ଅଙ୍ଗୀ ଚାହିଁ, ଚଞ୍ଚଳା ଚଞ୍ଚଳେ ଚଳିଛୁ ଯାହା ସେ
ଚିନ୍ତା ଜାଳିଛୁ କି ରତିନାହା (୩) ରେ ।
ଚନ୍ଦ ସେ ବୋଲଇ ନବ, ଚଣ୍ଡେ ପ୍ରସ୍ଥାନକୁ ତୁ ପରିହର ରେ
ଚଳ ସଦନେ ଏଥି ନ ମର ରେ । ୬ ।

ଛୁଡ଼ନ୍ତେ ପୟ (୪) ଜଳଦ, ଛୁର ଭେକରାଜ କରନ୍ତି ନାଦ ସେ
କ୍ଷୋଭେ କୋକିଳ ତବଦ ରେ ।
କ୍ଷପାକର (୫) ବଦନୀ, ଛନ୍ଦବଚନକୁ ମନେ କି ଯେନ ରେ
କ୍ଷଣକେ ତୁ ହେଉ ଶୂନ ରେ । ୭ ।

ଜାତବେଦରେ (୬) ଜୀମୂତ, ଜଳିବା ଦେଖି ତା ମିତ୍ର ଜୀମୂତ (୭) ସେ
ଜଳେ ନାଶିଲ୍ଲ ତୁରିତ ରେ ।
ଜବାଜିତଅଧରା, ଯେତ୍ନେ ତୁ ମୋ ତାପ ନାଶୁ ଗୋପ୍ୟ ରେ
ଜାଣିଛି ରେ ପ୍ରାଣେଶ୍ୱରୀ ରେ । ୮ ।

---

(୧) ଗିରୀଶରିପୁ—କନ୍ଦର୍ପ । (୨) ଚାମୀକର—ସୁବର୍ଣ୍ଣ । (୩) ରତିନାହା—କନ୍ଦର୍ପ ।
(୪) ପୟ—ଜଳ । (୫) କ୍ଷପାକର—ନିଶାକର, ଚନ୍ଦ୍ର । (୬) ଜାତବେଦ—ଅଗ୍ନି ।
(୭) ଜୀମୂତ—ମେଘ, ପର୍ବତ, ଇନ୍ଦ୍ର ।

ଝଳ ଦର୍ପଣମୁଖିକ, ଝାଡ଼ ପଲ୍ଲବଣ ହୋଇଲେ ସୂକ୍ଷ୍ମୀ ରେ
ଝୁରୁ ପରବାସୀ ଏକା ଦୁଃଖୀ ରେ । ୯ ।

ଣବକାଳିକା ଣରେକ୍ଷି, ଣାହାଙ୍କ ମଧ୍ୟେ ଣୀଳକଣ୍ଠ (୧) ପକ୍ଷୀ ସେ
ଣାଚେ ପୁଚ୍ଛ ଶିରେ ଟେକ ରେ ।
ଣବସପତ (୨) ବୟସୀ, ଣୋହୁବ କେ ଏବେ ପ୍ରେମଲକ୍ଷୀ ରେ
ଣପୁଂସକ ଘଡ଼ି କାମେ ରସି ରେ । ୧୦ ।

ଟଙ୍କଧର-ଶତ୍ରୁ (୩) କରେ, ଟେକ ଇନ୍ଦ୍ର ଧନୁ ପରକାଶରେ ସେ
ଟେକି ବଦେଶୀଙ୍କି ମାରେ ରେ ।
ଟେକସ୍ତନୀ ତୋର ତଟେ, ଟାହ୍ନ ପ୍ରାଏ ନ ମଣ ତୁ କିଶ୍ୱତେ ରେ
ଟଙ୍କାର ଏ ନୟନ ଉଚତେ ରେ । ୧୧ ।

ଠଣ କୋମଳବଚନୀ, ଠାବେ ଠାବେ ଇନ୍ଦ୍ରଗୋପକୁ (୪) ଯେନ
ଠିକ ଦଶିଲୁ ଅବନୀ ରେ ।
ଠିକ ତୋ କୁଚେ ଯୌବନ, ଠିକେ ଦଶଇ କରଜର (୫) ଚହ୍ନ
ଠୂଳେ ନକ ଏଥୁ ଅନୁମାନ । ୧୨ ।

ଡାହୁକ କାମ ଡଗର ଡାକରେ ଯୁବା-ଯୁବତୀ ନକର
ଡରେ ଉଚ୍ଛନ କଲେ ଅନ୍ତର ରେ ।
ଡୋଳାଗ୍ରଠମା ସେ ଦନ୍ତୁ, ଡାକ କରେ ଯେଣୁ ସେ ଧୃହୁଁ ଧୃହୁଁ ରେ
ଡର ହେବ ତା ଆଗରେ କେହୁ ରେ । ୧୩ ।

ଢମାଳ ପ୍ରାପ୍ତ ନ ମଣ, ଢକା ବଜାଇ ଆସେ କାମଗୁଣ ସେ
ଢାଳେ ଯେନବାକୁ ପ୍ରାଣ ରେ ।
ଢଳ ନୟନ ସୁନ୍ଦରୀ, ଢୋଲ ଶାମୁକ ଗର୍ଜନ ଯାହା ରେ,
ଢମ ନୋହୁରୁ ହେଉଛି ଯାହା ରେ । ୧୪ ।

ଅନ୍ଧାର ପ୍ରବଳ କଣ, ଅନ୍ଧ (୬) ରଜନୀ କେ ନୋହୁଲ ବାର ସେ
ଅଞ୍ଜନା ତୋ ମୋହ ପର ରେ ।
ଅଇଶୋରଯ୍ୟଦାୟିନୀ, ଏକା ଏ କାଳରେ ସେ ଏକାକିନୀ ରେ
ଅଛୁ ବିରସକୁ ହୃଦେ ଘେନ ରେ । ୧୫ ।

---

(୧) ନୀଳକଣ୍ଠ—ମୟୂର । (୨) ନବସପତ—ଷୋଡ଼ଶ (୯+୭) । (୩) ଟଙ୍କଧର-ଶତ୍ରୁ—ଶିବଶତ୍ରୁ ମଦନ । (୪) ଇନ୍ଦ୍ରଗୋପ—ସାଧବବୋହୂ ପୋକ । (୫) କରଜ—ନଖ । (୬) ଅନ୍ଧ—ଦିବସ ।

ତଟିନମାନେ ବଢ଼ିଲେ, ତଟ୍ଟକୂଳମାନେ ପାଖେ ପଡ଼ିଲେ ସେ
ତାରେ ପଥିକେ ସଡ଼ିଲେ ରେ ।
ତସ୍ମୁଲେକଅ ମୋହନା, ତୋ ଅଂଗ୍ରସ୍ପ ମୋ ଯେହ୍ନେ ନଖାନା ରେ
ତାହ୍ନ ନାହିଁ ତରିବାକୁ ବନା ରେ । ୧୬ ।

ଥିରମଣ୍ଡନା ଏ କାଳେ, ସ୍ଥାଣୁ ଶୋଭା ଦେଖେ ପ୍ରବାଳମାଳେ ସେ
ଅପ୍ସୁ କରି ଗୃହ୍ୱାଁ ତେଃଲେ ରେ ।
ଥିର ଗଜେନ୍ଦ୍ର ଗତି, ଥିଲେ ଦୁଃଖ ନଲାଗେ ଦର୍ଶନରେ
ଥାଣୁମୋହନା ରୁ ମୋ ସମ୍ପତ୍ତି ରେ । ୧୭ ।

ଦମକେ ଚଢ଼ି କୁଳିଶ, (୧) ଦେଖ ଦେଖ ଗରି ହୁଅନ୍ତି ନାଶ ରେ
ଦୂର ପ୍ରବାସୀ ସଦୃଶ ରେ
ଦାହ୍ନ କନକ ସୁଗାତ୍ରୀ, ଦବା କଅବା ଅଟେ କୁହୁରାତ୍ରୀ (୨)
ଦଶଇ ତା ଦୀର୍ଘନେତ୍ରୀ ରେ । ୧୮ ।

ଧର ପଂକଜ ହେବାରେ, ଧୀରେ ଗତିକଲେ ପଥିକବାରେ
ଧ୍ୟାନ ରଖି ପ୍ରପଦରେ (୩) ।
ଧରୁତ (ଧୃତ) ହାର ରୁ ଯେହ୍ନେ, ଧରି କଂଚନ ଲଜକୁ ମନେ ରେ,
ଧୀର ଆସୁ ମୋର ସନ୍ନିଧାନେ ରେ ।୧୯।

ନୀଳାମ୍ବର ପ୍ରିୟ ଦ୍ରୁମ, ନବକୁସୁମେ ଦଶେ କ-ସମ ସେ,
ନୂତନା ଅଙ୍ଗନା ସମ ସେ ।
ନାଗବର ଶୀର ଚଦ, ନେତ୍ରପତନେ ଲଭି ପ୍ରମୋଦ ରେ,
ନଶି ଦବସେ କଲ୍ଲ ବିନୋଦ ରେ । ୨୦ ।

ପୃଥିବୀ ତୃଣ ଆଚ୍ଛନ୍ନେ, ପତି ଆଗତ ଦେଖି ପ୍ରିୟା ଯେହ୍ନେ ସେ
ପୁଲକ ଲଭଇ ତୃପ୍ତେ ରେ ।
ପଙ୍କରୁହବାସିନୀ, ପଞ୍ଚଶର-ଗର୍ବ-ବିନାଶିନୀ ରେ
ପରିବାଦନୀ ପୀକଷ୍ଟେନୀ ରେ । ୨୧ ।

---

(୧) କୁଳିଶ—ବଜ୍ର । (୨) କୁହୁରାତି—ଅନ୍ଧାର ରାତି । (୩) ପ୍ରପଦରେ—ପାଦାଗ୍ରରେ ।

ଫୁଟିଲେ ସେବତୀ ଯାତୀ, ଫୁଟିଲ ପ୍ରୋଷିତ (୧) ରମଣୀ ଗୃହ ସେ
ଫାଟିଗଲା ହୃଦ-ମୋହ ରେ ।
ଫୁଲ୍ଲ ଇନ୍ଦୀବରଦୃଶା (୨), ଫାଇ ମୋଦେ ପକ୍ଷୀ କଲେଣି ବସା ରେ
ଫଳଭରେ ପୂର୍ଣ୍ଣ ହେଲ ରସା ରେ । ୧୨।

ବୀରବର କାମଗ୍ରାଏ, ବଶ୍ୟ କରିମାକୁ କଲ ବିଜୟେ ସେ
ବଇରେଖ (୩) ବିଦ୍ୟୁ କ ଏ ରେ ।
ବିମ୍ବ ବିଦ୍ରୁମ (୪) ଓଷ୍ଠୀ, ବିନ୍ଧେ ଶରବ୍ୟାକେ ନୀଚବୃନ୍ଦି ରେ
ବଶ କଲ ଏସନେକ ସୃଷ୍ଟି ରେ । ୧୩ ।

ଭୂତେଶ (୫) ତା ଦେଖିକରି, ଭାବିଲେ ମୁଁ ତ ପୂର୍ବରୁ ବଇରି ସେ
ଭସ୍ମେ ତନୁ ଦୂର କରି ରେ ।
ଭଲା ହେଲେ ପ୍ରସ୍ତର, ଭେଦ ନ ପାରିବ ସେ ଏଇଥର
ଭଲେ ହେବ କେ ଆଉ ସ୍ଥିର । ୧୪ ।

ମାଳତୀ ପୁଷ୍ପ ବିକାଶେ, ମଧୁକର ମଧୁ ଅଶନ (୬) ଆଶେ ସେ
ମାତିଲେ ରତି-ଉବସେ ରେ ।
ମରକତକୁନ୍ତଳା, ମାରଦର (୭) ଉଦ୍ଧିକ ତୁ ଭେଟା ରେ
ମୁଁ ତ ବରିଛି ତୋତେ ମହିଳା ରେ । ୧୫ ।

ଯୌବନଦ କରି ସ୍ନେହ, ଯୋଗୀ ବିଯୋଗୀ ଖୋଜ କରେ ନାଶ ସେ
ଜାଣି ହେଲି ମୁଁ ତୋ ଦାସ ରେ ।
ଯଶସ୍ୱିନୀ ତୁ ଧନ, ଯେବେ ଥିବ ଏହି ଅବଧାନ ରେ
ଯେତେ ହେଲେ କି କରିବ ଘନ ରେ । ୧୬ ।

ରମାବର ସ୍ମରି ତୋତେ, ରତ୍ନାକର ତୀର ଶ୍ରୀଭୂ ଯେତେ ସେ
ରହିଏ ନାହିଁ ମୋ ଚିତ୍ତେ ରେ ।
ରସବତୀ ତୋର ସେବା, ରତି-ରଜନୀରେ ମୋତେ ଦେବା ରେ
ରସାମଣ୍ଡନା ଏତେ କରିବା ରେ । ୧୭ ।

---

(୧) ପ୍ରୋଷିତ—ବିଦେଶସ୍ଥ । (୨) ଫୁଲ୍ଲ ଇନ୍ଦୀବର—ଫୁଟିଥିବା ନୀଳକଇଁ । (୩) ବଇରେଖ—ପତାକା । (୪) ବିଦ୍ରୁମ—ପୋହଳା । (୫) ଭୂତେଶ—ମହାଦେବ । (୬) ଅଶନ—ଭୋଜନ । (୭) ମାରଦର—କନ୍ଦର୍ପ ଭୟ ।

ଲମ୍ବ ସୁଚିକ୍କଣକେଶୀ, ଲବଣୀ ପ୍ରତିମା ସୁଷମା-ଖଣୀ ରେ
ଲଳନାବର ପ୍ରେୟସୀ ରେ ।
ଲୁଆଁଇଲେ ତୋର ମୁଖ, ଲଭେ ନସନ୍ଧ ପଞ୍ଚବିଶିଖ ରେ
ଲେଖି ହୁଅଇ ସେ କେତେ ଦୁଃଖ ରେ ।୨୮।

ବରଷା ବୃନ୍ଦେ ପ୍ରଚଣ୍ଡ, ବାମ (୧) କାମଦେବ ଦେଉଛୁ ଦଣ୍ଡ ସେ
ବାରେ ଗ୍ରମାଚର ଝଣ୍ଡ ରେ ।
ବନ୍ଧୁ ଜୀବନଜଉନ୍ଧୀ, (୨) ବନ୍ଧୁ ନକର ବସୁଧା-ଦୃଷ୍ଟି (୩) ରେ
ବଧୂମୁଖୀ ମୁଁ ଜଳରୁ ପ୍ରୋଷ୍ଠୀ (୪) ରେ ।୨୯।

ଶ୍ୟାମବନ୍ଧୁ ଏତେ କହୁ, ସୁବେଶ କରନ୍ତି ଆବେଶ ହୋଇ ସେ
ସନ୍ତୋଷ ଚିତ୍ତ ବନ୍ଧୁ ଯେ ।
ଶ୍ୟାମଳ ବେଣୀ ସଜାଡ଼ି, ଶେଷେ ସେ ସୁରଙ୍ଗ ଝୁମ୍ପାକୁ ଭିଡ଼ି ଯେ
ଶେଷ-ସଦନ ଦେଲେ ଉଜାଡ଼ି ଯେ ।୩୦।

ସିନ୍ଦୂରରେ ଟୋପି ଚନ୍ଦ, ସ୍ନେହେ ଲେଖିବାରୁ ହେଲା ସଚନ୍ଦ ସେ
ଶଶୀ କୋଳେ କିବା ମିତ୍ର (୫) ସେ ।
ସରୁ ଅଞ୍ଜନ ରଂଜି, ଶ୍ରବ (୬) ଯାଏ ଛକ ଦେଲେ ତା ଲାଗି ଯେ
ସେ ତ ଦେଲା ଉପମାକୁ ଭାଙ୍ଗି ଯେ ।୩୧।

ସର୍ବ ଅଲଙ୍କାର ଦେଇ, ଶେଷେ ଶ୍ରୀମୁଖେ ତାମ୍ବୁଳ ଭୁଞ୍ଜାଇ ସେ
ସନ୍ତୋଷ ଲଭିଲେ ବୃନ୍ଦେ ଯେ ।
ସରୋରୁହାକ୍ଷୀ (୭) ଭୁଲେ, ସମ୍ବରଶ (୮) ରସରେ ଭସିଲେ ଯେ
ସର୍ବ ସ୍ଥାପି ଅନ୍ତର ନୋହିଲେ ଯେ ।୩୨।

ହେଲା ବେନି ଏକ ଅଙ୍ଗ, ହେମବଲ୍ଲରୀ କି ତମାଳ ସଙ୍ଗ ରେ
ହାରିଣ ଗଲା ଅନଙ୍ଗ ଯେ ।
ହୃଦେ ବସ୍ତ୍ର କଲା, ହେଲେ ବଡ଼ପଣ ମୋହର ଗଲା ଯେ
ହେଜ ଏତେକ ଅପସରିଲା ଯେ ।୩୩।

---

(୧) ବାମ—ପ୍ରତିକୂଳ । (୨) ଜୀବନଜ—ପଦ୍ମ । (୩) ବସୁଧାଦୃଷ୍ଟି—ଅଭିମାନ-ଜନିତ ନମ୍ରକୁ ଦୃଷ୍ଟି । (୪) ପ୍ରୋଷ୍ଠୀ—ମାଛ । (୫) ମିତ୍ର—ସୂର୍ଯ୍ୟ । (୬) ଶ୍ରବ—କାନ । (୭) ସରୋରୁହାକ୍ଷୀ—ପଦ୍ମନୟନା । (୮) ସମ୍ବରଶ—କନ୍ଦର୍ପ ।

କ୍ଷୌଣି (୧) ଧାରଣ କୁମାଣ୍ଡ, ବେଦ ବାରଣ ବର ମନୋବାଞ୍ଛ ଯେ
କ୍ଷେମେ (୨) ତାଙ୍କ ପଦ ସ୍ମର ସେ ।
କ୍ଷୀତପଟ (୩) ଙ୍କର ବର (୪), କ୍ଷମାସିନ୍ଧୁ ବନଦୁର୍ଗେଶ୍ୱର ଯେ
କ୍ଷେମେ ବୋଲନ୍ତି ହର ଉଛର ଯେ । ୩୫ ।

---

ଲେଖକ : ବଲ୍ଲଭ ଦାସ

## ଶରୀରଭେଦ ଚଉତିଶା

କହଇ ଚଇତନ ମନ
କଳା କନ୍ହାଇଙ୍କ ନକଲୁ ଧ୍ୟାନ ହୋ,
କନ୍ତୁ କନ୍ତୁ ସରଗଲା ତୋ ଦିନ, ସୁମନ ହୋ । ୧ ।

ଖିତିରେ ଜନମ ହେଲୁ
କ୍ଷମାନିଧିଙ୍କ ଦଣ୍ଡେ ନ ଭଜିଲୁ ହୋ,
ଖେଉଡ଼ଘରେ ମାଡଣ ରହିଲୁ, ସୁମନ ହୋ । ୨ ।

ଗୁରୁ କେ ଚହ୍ନିଲୁ ନାହିଁ
ଗୁରୁ ଯାହା ଗଲେ କର୍ଣ୍ଣରେ କହି ହୋ,
ଗଣ୍ଠି ଧନ ସିନା ତୋର ସେହି, ସୁମନ ହୋ । ୩ ।

ଘର ଆଉ ବଣା ହେଲୁ
ଘରଧନକୁ ହରାଇ ବସିଲୁ ହୋ,
ଘାଉଲଗା (୫) ମୃଗ ପ୍ରାୟେ ହେଲୁ, ସୁମନ ହୋ । ୪ ।

ଆସୁଛୁ ଯାଉଛୁ ସେହି
ଅଲଗେ ଆଉଁ କାହିଁ ନ ମିଶଇ ହୋ,
ଅକ୍ଷି ଆଗରେ ଅଛୁ ତ ରହି, ସୁମନ ହୋ । ୫ ।

ଚୁହାଁ ଚକ୍ଷୁ ସ୍ଥିର କରି
ଚୈତନ୍ୟଘର ଚେତନାକୁ ଭରି ହୋ,
ଚନ୍ଦ୍ରମାକୁ ଯେସନେ ଚକୋରୀ, ସୁମନ ହୋ । ୬ ।

---

(୧) କ୍ଷୌଣି—ପୃଥିବୀ । (୨) କ୍ଷେମ—ଶୁଭ, ମଙ୍ଗଳ । (୩) କ୍ଷୀତପଟ—ରାଜା ।
(୪) ବର—ଶ୍ରେଷ୍ଠ । (୫) ଘାଉଲଗା—ଆହତ ।

ଛୁଇ ପ୍ରାଣେ ସେ ରହିଛ
ଛପନ କୋଟି ଆବୋର ଝେଙ୍କୁଛ ହୋ,
ଛତ୍ରଚନ୍ଦ ପରେ ବିରାଜୁଛ, ସୁମନ ହୋ । ୭ ।

ଯିବାକୁ ଅର୍ଗଳ ବାଟ
ଯାଇଁ ବସିଲେ ପଡ଼ଇ ସଙ୍କଟ ହୋ,
ଯୋଗମାୟା ଜଗିଛ ସେ ବାଟ, ସୁମନ ହୋ । ୮ ।

ଝରୁଛ ତ୍ରିବେଣୀ ଧାର
ଝରକୁ ଲକ୍ଷ୍ୟ କରିଛ ଶଙ୍କର ହୋ,
ଝରସ୍ଥାନ ଶ୍ରୀରଙ୍ଗା ଅଧର, ସୁମନ ହୋ । ୯ ।

ଞଗବାରଷ୍ଟି ଆକାର
ଞାପମୂଳେ ବଜେ ନଟନାଗର ହୋ,
ଞିଳା କରନ୍ତ ଗୋପୀ ସଙ୍ଗର, ସୁମନ ହୋ । ୧୦ ।

ଟଙ୍କଧର ବେଦବର
ଟାକଣ ରହିଅଛନ୍ତି ଦକ୍ଷର ହୋ,
ଟାପେଣ ଖଞ୍ଜିଲେ ତାଙ୍କର, ସୁମନ ହୋ । ୧୧ ।

ଠୂଳ ଆଗେ ଅଛୁ ହୋଇ
ଠୂଳଘର ଦନେ ଖଞ୍ଜିବ ସେହି ହୋ
ଠିକଣା ତୋର ରହିବ ନାହିଁ, ସୁମନ ହୋ । ୧୨ ।

ଡାକ ବଜାଇ କହୁଛି
ଡାଏଣୀ ବେଳକୁ ବେଳ ଖାଉଛି ହୋ
ଡାକ ରଖ ବେଳେ ନନ୍ଦବସ୍ତି, ସୁମନ ହୋ । ୧୩ ।

ଢମପଣ କେତେ କରୁ
ଢାଙ୍କିଣ ରହିଛି ସେ ମନ୍ଦାମେରୁ ହୋ,
ଢୋକୁଁ ବିଷ ଅମୃତ ପାସୋରୁ, ସୁମନ ହୋ । ୧୪ ।

ଅନନ୍ତ ନାମକୁ ଧର
ଅନ୍ତ ନପାଇଲେ କେହି ତାହାର ହୋ
ଅନୁକ୍ଷଣେ ମୂଳ ହେତୁ କର, ସୁମନ ହୋ । ୧୫ ।

ତରଙ୍କ ଗ୍ରନ୍ଥ ମନାଇଁ
ତରଙ୍ଗା ବେଳହୁଁ ଅଛଇ ସେହି ହୋ,
ତର୍କ ଥିଲେ ଲାଭ ନ ମିଳଇ, ସୁମନ ହୋ । ୧୬ ।

ଥାଉଁ ଥାଉଁ ଧୈରୁ କର
ଥିର କର ମନ ନୟନ ତୋର ହୋ,
ଥିବୁ କେତେ ଦିନ ଏ ସଂସାର, ସୁମନ ହୋ । ୧୭ ।

ଦମ୍ଭ କ୍ରୋଧ ହିଂସା କାଟ
ଦେଉ ଅଛନ୍ତି ଏ ଦାରୁଣ କଷ୍ଟ ହୋ,
ଦୟାସାଗରଟି ନନ୍ଦସୁତ, ସୁମନ ହୋ । ୧୮ ।

ଧରି ନପାରନ୍ତି କେହି
ଧଣଥିବୁଁ ଏକା ନାମକୁ ଶୁଦ୍ଧି ହୋ
ଧରି ଆପଣାରୁଏଁ ଉଠଇ, ସୁମନ ହୋ । ୧୯ ।

ନାମ ନ ଭଜ କିପାଇଁ
ନଷ୍ଟଦ୍ୱ କରି କହୁଅଛୁ ମୂର୍ଖ ହୋ
ନାମରୂପେ ବିହରୁଛି ସେହି, ସୁମନ ହୋ । ୨୦ ।

ପରମ ଭାବକୁ ଧର
ପର ବୋଲି ଯା ବସ୍ତୁ ମନର ହୋ,
ପର ଶୁଦ୍ଧି ସିନା ହେବୁ ନର, ସୁମନ ହୋ । ୨୧ ।

ଫାଶିକାଲ ହେଲା ତୋତେ
ଫରୁଆ କରିଦେଲାଣି ଜଗତେ ହୋ,
ଫାନ୍ଦେ ପଡ଼ିଛୁ ଯିବୁ କେମନ୍ତେ, ସୁମନ ହୋ । ୨୨ ।

ବେଲସୁଁ ଉପାୟ କର
ବେଳ ବୁଡ଼ିଗଲେ ହାଟ କାହାର ହୋ,
ବାଟବଣା ହେବୁଟି ନକର, ସୁମନ ହୋ । ୨୩ ।

ଭାବକୁ ନକଟ ହରି
ଭଜିଲେ ଭବାର୍ଣ୍ଣବୁଁ ହେବୁ ପାରି ହୋ,
ଭଣ୍ଡ ପସରି ଅଛୁ ଆବୋରି, ସୁମନ ହୋ । ୨୪ ।

ମନ ମତ୍ତଗଜ ଜାଣ
ମାୟାଜଲରେ କରୁଅଛୁ ସ୍ନାନ ହୋ,
ମତ୍ତଗଜ କହେ ଚଇତନ, ସୁମନ ହୋ । ୨୫ ।

ଜଣି ଯେ ପାଶବ ତାଙ୍କ୍ର
ଯୋଗୀମାନଙ୍କୁ ଦେଖାଏ ଭୃଙ୍ଗୁ ହୋ
ଜାଣୁଥାଇ ଭକତ ଭାବକୁ, ସୁମନ ହୋ । ୨୬ ।

ରଥାଙ୍ଗ କରେ ଘେନଛୁ,
ରଥ ଉପରେ ବିଜେ କରିଛୁ ହୋ,
ରଥୀଆ ଯେ ଟି ମନ ସାରଥି, ସୁମନ ହୋ । ୨୭ ।

ଲୀଳା କରୁଛୁ ସଂସାର
ଲକ୍ଷ୍ମମାନେ ଭାଙ୍ଗି ଦେବ ଏ ଘର ହୋ,
ଲକ୍ଷ୍ୟ ରଖ ଗୋବିନ୍ଦ ପୟର, ସୁମନ ହୋ । ୨୮ ।

ବାସନା କରୁଛୁ ସେହ୍ନ
ବାସ ଥିବାଯାକ ଭ୍ରମର ଥାଇ ହୋ,
ବାସିହେଲେ ଫୁଲ ନ ଛୁଅଁଇ, ସୁମନ ହୋ । ୨୯ ।

ସହଜରେ ହେଉକର
ସହଜେ ଅଛୁ ସେ ତୋହ୍ର ଆଗର ହୋ,
ସେବ ନପାରି ହେଉଛୁ ପର, ସୁମନ ହୋ । ୩୦ ।

ସଦ୍‌ଗୁରୁ ସେବା କର
ସଂସାର-ତୃଷ୍ଣାକୁ ଛାଡ଼ ସତ୍ୱର ହୋ,
ସଂସାର ନୁହେଁ କାହାର, ସୁମନ ହୋ । ୩୧ ।

ଶେଷଦେବ ମସ୍ତକର
ସହସ୍ରଦଳପଦ୍ମ କେଶର ପର ହୋ,
ସେବାଅଷ୍ଟସଖୀ ନିରନ୍ତର, ସୁମନ ହୋ । ୩୨ ।

ହଥ ଅକ୍ଷରକୁ ଧର
ହଜାଅ ମନକୁ ହରି ପୟର ହୋ,
ହେଜ ବୁଝିଲେ ହୃଦ ଭିତର, ସୁମନ ହେ । ୩୩ ।

କ୍ଷମାନିଧିଙ୍କର ଦାସ
କ୍ଷମା କରିବେ ବଳ୍ଲଭର ଦୋଷ ହୋ,
କ୍ଷୋଭ ପାଇବାକୁ ନାହିଁ ଆଶ, ସୁମନ ହୋ । ୩୪ ।

---

ଲେଖକ : ବ୍ରଜରାଜ ସିଂହଦେବ
(ଯୁବରାଜ, ଖଡ଼ିଆଳ)

## ବଳାହକ ଚଉତିଶା

( ରାଗ-କାମୋଦ )

କେଉଁ ବିଦେଶୀ ଜନ କରି ଅବଲୋକନ ନଭରେ କଳା ବଳାହକ,
କହେ ଚେଳ ବିବେକ ପ୍ରିୟାକୁ ଯା ଏ ଦୁଃଖ ଦେଲି ମୋ ଜୀଇଥିବା ଧିକ ରେ
ବଳାହକ, କି କରୁଥିବ ଜୀବେଶ୍ୱରୀ
କାଳ ବଞ୍ଚିବ ସେ କିପରି,
କାମ ପାମର ବାମ ହୋଇ ଦାହକ ହେମଅଙ୍ଗୀକି ଦେଉଥିବ ସାରି ରେ । ୧ ।

ଖଞ୍ଜରୀଟସୁଦୃଶୀ ଲଭି ବିଚ୍ଛେଦ ଦଶା ଉପାଶୟନ କରିଥିବ,
ଖଗମାନେ ଚପଳା ଝଟଳେ କରୁ ଖେଳା ଛଟକେ ନେତ୍ର ବୁଜୁଥିବ ରେ
ବଳାହକ, ଖେଦୁ ହେବଣି କ୍ଷୀଣ ନାଡ଼ୀ
ଖର ନିଶ୍ୱାସ ପାଦେ ଗ୍ରୁଢ଼ି,
ଖଳ ଧାତାକୁ ନିନ୍ଦି ସ୍ୱଲପଟକୁ ବନ୍ଦି ସହୁ ସେ ଥିବ ସ୍ମରଧାଡ଼ି ରେ । ୨ ।

ଗତିସ୍ୱିବ ଭାବନା କରୁଁ ସରୁମଧ୍ୟମା ସରୁ ନଥିବ ତାର ଜନ,
ଗିରି ପରି ଆହାର ମଣି ଚେଳିବ ହାର ନୀହାରକରମୁଖୀ ଧନ ରେ,
ବଳାହକ, ଗରିଷ୍ଠ କଷ୍ଟ ତାକୁ ଦେଲି
ଗଣିତ ଅରସିକେ ହେଲି ,
ଗଣବଣା-କୁରଙ୍ଗୀନୟନା ଶିରୀଷାଙ୍ଗୀ ବାଳାକୁ ମାରେ ସମର୍ପିଲି ରେ । ୩ ।

ଘନାଘନ ନିନାଦ ଶୁଣି ହୋଇ ଚକିତ ତତ୍କ୍ଷଣେ ଜ୍ଞାନଶୂନ୍ୟ ହୋଇ,
ଘଡ଼କରେ ଚେତନା ପାଇ କୁନ୍ଦରଦନା ଆଳୀଙ୍କୁ କହୁଥିବ ସ୍ନିହି ରେ,
ବଳାହକ, ଘନକାଳର ସନ୍ଧି ଦାହି
ଘଟ ନ ରଖି ପାରେ ଆଉ,
ଘେନ ମୋ ନିବେଦନା କର ବୃନ୍ଦ ସର୍ଜନା ସଖି ମୋ ଜୀବ ବେଗେ ଯାଉ ରେ ।୪।

ଙଗ ଶିଖରେ ଆଣ୍ଟେ ଡାକଣ ନୀଳକଣ୍ଠେ ପୁଚ୍ଛ ଉଞ୍ଚାଇ ନାଚୁଁ ହଠେ,
ନବବାଳୀ ପେ ରଙ୍ଗ ଶୁଣି ଚମକ ପଡ଼ି ଜୀବନ ରଖିଥିବ କଣ୍ଠେ ରେ,
ବଳାହକ, ଙଛି କୁ ଅଟେ ମୋର ସ୍ପୃହା
ନ ଫାଟି ରହୁଅଛୁ ଯାହା,
ନ ସନ୍ତୁଥିଲା ଲେଶେ ମୋ ବିଚ୍ଛେଦ ଏବେ ସେ ଙଷ୍ଟେ ହେବନି ଅନ୍ତର୍ଦାହା ରେ ।୫।

ଚୁମ୍ବି ମଲ୍ଲୀବିକାଶ ମଲ୍ଲ ବୋଲି ବାଳୀଶ ଭଳି ଚନ୍ଦ୍ରବ କାଳୀଧବ,
ଚମ୍ପା ଶମ୍ପାର ଗନ୍ଧ ଯା ଝଳ କରେ ଖର୍ବ ସେ ଅଙ୍ଗ ମଳିନ ଦଶିବ ରେ,
ବଳାହକ, ଚମ୍ପପୁରକୁ ଯେବେ ଯିବ
ଚକୋରୀଁ ମୋତେ ଛନ୍ନ ହେବ,
ଚମ୍ପପ୍ରଥମା ପରି ଚେତନା ଦୂର କରି ଭକ୍ତିକ ଆରଜ ରହିବ ରେ ।୬।

ଛଇଳୀ ହେବ ମୂକ ଶୁଣି ଶାମୁକ ମକମକ ଦକକୁ ଚଟେ ଧରି,
ଛପିଯିବ ତା ହେତୁ ଜାତ ହୋଇ ବେପଥୁ ସ୍ୱେଦନ ଯାଉଥିବ ଥରି ରେ,
ବଳାହକ, ଛଦ୍ମଦଶାର ଖେଦ ବଳେ,
ଗୁଡ଼ି ଅଇଲି ତାକୁ ବଳେ
ଛଣ୍ଡାଇ ପାଣିବନ୍ତ ମୁକ୍ତାହାର ମୁଁ ତ ଫିଙ୍ଗି ଯା ଦେଲି ଗଣ୍ଡଜଳେ ରେ ।୭।

ଜାତ ପଦ୍ମ ଧନୀ ଦର୍ଦ୍ଦୁର ଧ୍ୱନି ଶୁଣି ଉବନ ମଣିବନ୍ତ କାପ୍ତ
ଜବାଅଧରୀ ଧରି ଲେକ ପର୍ଯ୍ୟନ୍ତ ତୋରି ବନ୍ଧୁ ଯେ ବସିଥିବ ଧରି ରେ,
ବଳାହକ, ଜୀମୂତ କୋଦଣ୍ଡ ଉଇଁଲେ
ଜୀମୂତଗର୍ଜନା ବହ୍ନିଲେ
ଜଳଜ ଲକ୍ଷ ଲକ୍ଷ ଦେବାକୁ ବିରୂପାକ୍ଷ ମନାସୁଥିବ ସେ ଆକୁଳେ ରେ ।୮।

ଝଞ୍ଜାନିଳ ପ୍ରବଳ ବଳ ନ ସହି କଳକଣ୍ଠୀ ହେବନି ସ୍ତମ୍ଭୀଭୂତ,
ଝର ଝର ସଲିଳଧାର ଦେଖି ବହ୍ନିଳ ଦ୍ୱିଗୁଣେ ହେବ ସନ୍ତାପିତ ରେ,
ବଳାହକ, ଝସକେତନେ ହୋଇ ତ୍ରାସି
ଝୁରୁ ଯେ ଥିବ ଅହର୍ନିଶୀ
ଝିମିଟେ ଯୁଗବତ ମଣୁଥିବ ସେ ମତ୍ତ ଗଜଗାମିନୀ କାଶୀବାସୀ ରେ ।୯।

ନ କରେ ତଳେ ଗାଙ୍ଗ ଭିନ୍ନ ଯେ ଶତପତ୍ର ନେତ୍ରା ମୋ ଭୁଲେ ଶୟନରେ,
ଞବଡ଼େ ହରେ ହର ଜମାଇଁ ନାଗବର ଅଳଗା ନ ସହେ ମନରେ ରେ
ବଳାହକ, ଞରେଖି ଏ ଞଶୀ ଅନ୍ଧାର
ଞିଦ୍ରା କ ହେଉଥିବ ତାର,
ଞୟନ ମାତ୍ର ଭୁଜ ମୋ ସଙ୍ଗଲଭିବ ତେଜି ଶଯ୍ୟ ବସିଥିବ ଉଜାଗର ରେ ।୧୦।

ଟେକମଦରେ ମୋଦେ ପାକଶାସନ ପଦେ ଟାକର ମାରି ତୁଚ୍ଛ ମଣେ,
ଟାଣପଣ ବିନାଶ କରିବାକୁ ଲେଖେଣି ମୋତେ ରଖିଛୁ ଏ କଷଣେ ରେ
ବଳାହକ, ଟେକଦ୍ୱରଜା ରନ୍ଧ୍ର ଟେଣେ
ଟଙ୍କଧରଙ୍କ ଶସ୍ତ୍ରବାଣେ
ଟୋପେ ପଡ଼ିଲା ଏଣି ପରି ରମଣୀମଣି ଦୁଃଖି ହେବନ ଅନୁକ୍ଷଣେ ରେ । ୧୧ ।

ଠିକେ ରାଜାଧିରାଜ-ଆତ୍ମଜ ବ୍ରଜରାଜ ସିଂହ ଶ୍ରୀ ଯୁବରାଜ ବୋଲେ,
ଠବଣ୍ଡିଳୁହରଜା ଅବଳାକୁ ଗିରିଜା ରମଣ ରଖିଥିବେ ହେଳେ ରେ
ବଳାହକ, ଠୁଳେ ଚମ୍ପକ ଲକ୍ଷେ ଦେବ
ଠୁଳ-ସ୍ତମ୍ଭଦ୍ୱାର ପାଶେ ଥିବ
ଠାକୁରାଣୀଙ୍କଠାରେ ଭକତ ବାରେ ବାରେ କରି ଉପନବଲୀ ଦେବ ରେ । ୧୨ ।

ଡାହୁକ କଳକଳରବ ଶ୍ରବଣେ ଷୋଳବୟସୀ ବପୁସୀ ଝୁରନ୍ତୁ,
ଡେରି ଡ଼ୋଳାଯୁଗଳ ତଳପଡ଼ି ବିକଳ ହୋଇଣ ଲଭିବ ଦରକୁ ରେ
ବଳାହକ, ଡଙ୍ଗରସ୍ୱର ତା ଦେଖିଣ
ଡାକ ସେ ବନ୍ଧୁଥିବ ବାଣ
ଡୋଳା ସମ୍ପତ୍ତି ମୋର ଭଜ ଭୁତବିକାର ହେବନ ମୋହ କ୍ଷଣ କ୍ଷଣ ରେ । ୧୩ ।

ଢାଳେ ଆଳୀକଳାପ କରୁଥିବେ କଳାପ ବେଢିଣ ମହଲା ଭୂପକୁ
ଢଳହଲନେତ୍ରୀର କରିବେ ଉପଚାର ନସହ ବିରହ ତାପକୁ ରେ
ବଳାହକ, ଢାଳ ଜଳାର୍ଦ୍ର କରି ମସ୍ତି
ଢମାଳୀସ୍ତ୍ରୀକ ଶୁଆଇ,
ଢାଳ ବ୍ୟଜନେ ବାରିଜାକ୍ଷୀ ଲପନେ ବାରି ସିଞ୍ଚିଣ ସଚେତ କରାଇ ରେ । ୧୪ ।

ଅଳି ସ୍ୱମନେ ସ୍ନେହ ହେବା ଦେଖି ସୁସ୍ନେହ ଶୋକସରତେ ବୁଡ଼ିଥିବ
ଅତନୁ ଛିଦ୍ର ପାଇ କାଣ୍ଡ କୋଦଣ୍ଡେ ଦେଇ ସୁତନୁ ଅଙ୍ଗେ ପୀଡ଼ୁଥିବ ରେ
ବଳାହକ, ଅନୁବରତେ ନେତ୍ରୁ ବନ
ଅଛିଦ୍ରେ ମୁଞ୍ଚୁଥିବ ଧନ
ଅତଳସରାଇକା ତନ୍ତ୍ର ହେବନ ଫ କା ଶ୍ରୀମୁଖେ ନଥିବ ପ୍ରସନ୍ନ ରେ । ୧୫ ।

ତକାଇ ଦେଲେ ବୁଲୁ ବକାଳୀ-ମାଳିକାକୁ କରୁ ଯେ ଥିବ ଦାହ ଦାହେ,
ତାଟକା ହୋଇ ଏକା ବଞ୍ଚିବାକୁ ରସିକା ଆଶା କ ରଖିଥିବ ଆହ ରେ
ବଳାହକ, ତଳେ ଅନ୍ତର କୋଳ୍ହ ହେଲେ
ତା ତରୁ ଅସ୍ତୁ ନୁହେ ଭଲେ,
ତନୁରେ ମୋର ପ୍ରାଣ ଥାଉଁ ତାକୁ କଷଣ ଦେଲା ବିପାକକର୍ମ ବଳେ ରେ ।୧୬।

ସ୍ଥିରଗମନା ଅରେ ଖିଆଲେ ହେଲେ ମୋରେ ଗୃମାଣୀ ହେବା ଦେଖିନାହିଁ
ଥିବେ କି ତାର ପରି ଅନୁରାଗୀ ଏ ଧରି ଚିତ୍ତରେ ପରତେ ନୁହଇ ରେ
ବଳାହକ, ଥିଲି କରମେ ଏତେ ସରି
ଅରେକ ପୀନପୟୋଧରି,
ଥିବାରୁ ମୁଁ ପ୍ରବାସେ ବରଅଙ୍ଗୀ ମୋ ଦୋଷେ ହୋଇଲି ଅଭାଗିନୀ ପରି ରେ ।୧୭।

ଦରକରେ ଯେ ପୁଣି ଶୁଣି କୋକିଳବାଣୀ ଆସି ମୋ ଅଙ୍ଗେ ରହେ ଲାଗି,
ଦମ୍ଭୋଳିଗରଜନ ସମ୍ଭାଳିବା ଭଜନ ହେଲି ସେ ଆଜନମସୁଖୀ ରେ
ବଳାହକ, ଦଇବ ବିପାକେ ପଡ଼ିଲି
ଦୁର୍ବଗ୍ରହକୁ ସାର କଲି,
ଦୁଃସହ ଦବଦାହ ଶିଖିଷଣ୍ଡଲେ ମୁଁ ତ ଅବିବେକରେ ସୁହାଇଲି ରେ ।୧୮।

ଧୀବରସାର-ଧନର ପାଶକୁ ହୋଇ ସ୍ୱର ଯାଅ ମୋଠାରେ ଦୟାବନ୍ଧ,
ଧୌତ ଯା ନେତ୍ରାଞ୍ଜନ ତନୁକାନ୍ତି ମଳିନ ଅତିଶୋକେ ଯେ ଥିବ ରହି ରେ
ବଳାହକ, ଧରି ବାଲ୍ମୀକମତି ସେହି
ଧୃତି କି ଥିବ ଯେ ହଜାଇ,
ଧରଣୀରେ ପଡ଼ିଥିବ ଯେ ମୁଖମାଡ଼ି ଜାଣିବୁ ମୋ ବଲ୍ଲଭା ସେହି ରେ ।୧୯।

ନିବେଦନ ମୋହର କହିବୁ ତା ଛାମୁରେ ମୋ ପରି ଅତି ଦୁଃଖୀ କେହି
ନୀରଜଭବ କଲେ ହାଜର ହେବ ଭଲେ ଧଇର୍ଯ୍ୟ ଧରି ଜୀବେ ଥାଉ ରେ
ବଳାହକ, ନଧରୁ ଦୋଷ ମୋହଠାରେ
ନାହିଁ ମୋ ଆସ୍ୱତ୍ତ ଏଥିରେ,
ନିଧନୀ-ଧନ ଜାଣି ଜାଣି ତେଜେ କି ପୁଣି ଅବଧାନକୁ ଅଂଶ ଥରେ ରେ ।୨୦।

ପିଇଥିବାରୁ ତାର ଅଧରାମୃତ ମୋର ଜୀବନ ମାତ୍ର ଯାଉନାହିଁ,
ପଥର ଛାତି ମୋର ହେଲା କଠିନ ଉରଜାର ତା-ସଙ୍ଗ-ଗୁଣ ବହି ରେ
ବଳାହକ, ପୟୋବରଜାନ ମୀନଭଳି
ପ୍ରବାସେ ରହି ଦୁଃଖୀ ହେଲି,
ପ୍ରୀତିଅଧୀନା ଦେଲି ଭାବକୁ କରି ମାଳା ତା ନାମ ଜପି ଦିନ ନେଲି ରେ ।୨୧।

ଫଳର ପରି ଭେକ ହେଲଣି ମୋର ଦେଖ ଫଗୁଆ-ପ୍ରୀନା ବସ୍ତ୍ରାନରେ,
ଫଗୁଣ କାମରାଜା କରଦେଇଣ ସଜା ସନ୍ତତେ କରୁଛି ଦହନ ରେ
ବଳାହକ, ଫନ୍ଦାଧନକୁ ଦୂର କରି
ଫଳିତ ଯାଉଛି ଏପରି,
ଫୁଲ୍ଲାରବିନ୍ଦମୁଖୀ ସଙ୍ଗ-ସୁଖ ଉପେକ୍ଷି ହେଉଛି ଏ କଷ୍ଟ ଆବୋରି ।୨୨।

ବାମଦେବ କରୁଣା କଲେ ବାଳଅରୁଣାଧରାଙ୍କ ପାଇ ମୁଁ ଦେଖିବ,
ବୃକ୍ଷରେ ବଲ୍ଲୀବିତ ବାନ୍ଧିବି ଅଙ୍ଗେ ମୁଁ ତ ନିବିଡ଼େ ଜଡ଼ି ରହିଥିବ ରେ
ବଳାହକ, ବୋଇଲେ ନିୟମ କରିବ
ବିଦେଶ କେବେ ନକରିବ,
ବିନାଶି ଏ ବିପଦ ଶତ-ସଂପତ୍ତି ପଦତଳରେ ଆଣି ଖଟାଇବ ରେ । ୨୩ ।

ଲାଗିଛି ଏ ଭରସା ରସାମଣ୍ଡନାର ସାଧବେ ହେବ କି ଏବେ ଭେଟ,
ଶାପେ ବରଜରାଜ ସିଂହ ମୋ ନାଗରାଜଗତିକ ହେଲା କେତେ କଷ୍ଟ ରେ
ବଳାହକ, ଭରମବଶୁଁ ଏହା କଲି
ଭରମଦେହାକୁ ଗ୍ରହିଲି,
ଭଲି ଦାରୁଣ ବିହି ଏହା ସେ ଥିଲି ଲିହି ରସିକେ ନିନ୍ଦିତ ହୋଇଲି ରେ ।୨୪।

ମୁନିମନମୋହିନୀ ମହେଶଭୂତ ଯେନ ବିପଶ୍ଚିତରେ ରତ ହୋଇ
ମନ୍ମଥରେ ଲଢ଼ାଇ କରି ତାର ବଢ଼ାଇ ଛଡ଼ାଇଦିଏ ଘଉଡ଼ାଇ ରେ
ବଳାହକ, ମାନସଭଲି ସେ ମଣ୍ଡାଇ
ମଞ୍ଜୁକିଙ୍କିଣୀକି ବଜାଇ,
ମୋହ ବସଣୀ-ସଙ୍ଗେ ନଚ୍ଚାଇ କେତେ ରଙ୍ଗେ ମୋ ନେହ କୃତାର୍ଥ କରଇ ।୨୫।

ଯୁବକବୃନ୍ଦଇନ୍ଦ୍ର ବୋଲାଉଥିଲି ଗ୍ରୀବସୁନ୍ଦରମୁଖୀ ସଙ୍ଗ ପାଇ
ଯୋଗେ ପିଶୁନ ଧାତା ଜାଣିକରି ଅହିନ୍ତ୍ରା ସେ ସୁଖ ଦେଇଛି ଭଙ୍ଗାଇ ରେ
ବଳାହକ, ଯୁବତୀବର ପ୍ରେମଶୀଳା
ଯେବେ ନ କରିବ ଶିଥିଳା
ପାବକ-ଲେଖାଭୃତ୍ୟ କାମପାବବରତ ଆଉ ନ ସହିପାରେ ଜ୍ୱାଳା ରେ ।୨୬।

ରଖିଛି ପାଞ୍ଚଜୀବ ବନ୍ଧୁ-ମୁଖରାଜୀବ ସ୍ନେହାନ୍ତେ ଏ କପଣ ଯିବ,
ରାମାକରୁଣାଳୟା ହୃଦରେ କରି ଦୟା ମୋ ଦୋଷ ମନୁ ବରଜିବ ରେ
ବଳାହକ, ରଜନୀଦିବା ପାଶେ ଥିବ
ରସରେ ସ୍ତୁତି କରୁଥିବ,
ରଣରଣଦର୍ପଣଦର୍ପ-ଦଳା ଲପନ ସ୍ମରି ମୁଁ ଦିନ ସାରୁଥିବ ରେ । ୨୭ ।

ଲଳନାର ତୁଳନା ହେବାକୁ ନବାଙ୍ଗନା ସଂସାରରେ କେହି ନାହିଁ ଜଣେ,
ଲମ୍ବରେ କୁଣଧାତ୍ରୀ ବସି ଯତନ କରି ଗଢ଼ିଲେ ଅତି ଶୋଭାଗୁଣେ ରେ
ବଳାହକ, ଲକ୍ଷ ତା କେବେ ସେ ନହେବ
ଲାଘବ ବିଧାତାକୁ ହେବ,
ଲକ୍ଷାରସ ଚରଣେ ଦେବାର ଦାସୀପଣେ ଗଣନାଯୋଗ୍ୟ ନ ହୋଇବ ରେ ।୨୮।

ବିଧୁ ବିମ୍ବ-ଅଧରଗ୍ରୁ ହନେ ମୁଁ ପଲ୍ୟଙ୍କକୁ ନେଇ ବିବାସ କରୁଁ ବଳେ,
ବାରିଜଦଳୋଦରସ୍ଥ ଚନ୍ଦ୍ରଚୂର୍ଣ୍ଣିକା ଧରି ମାଇଲି ମୋ ନେତ୍ରଯୁଗଳେ ରେ
ବଳାହକ, ବଡ଼ ବଞ୍ଚନା ଧନୀ କଲି
ବ୍ୟଗ୍ରେ ମୋ ବିଗ୍ରହେ ଜଡ଼ିଲି,
ବଚନେ କଲି ତୋଷ କ୍ଷମାକର ମୋ ଦୋଷ ବୋଲି ଅନେକ ଚୁମ୍ବ ଦେଲି ରେ ।୨୯।

ଶତପୁଟଦ୍ୱାଟକ ଗଉରାଙ୍ଗ ଏତେକ କହିବି ଏକାନ୍ତରେ ଯାଇଁ,
ଶାକରବଚନୀର ସ୍ୱୀକର ମୁଁ ନକରି ବୋଲି ଗୁମାନ ଥିଲି ରହି ରେ
ବଳାହକ, ଶେଷ ସେ ଆଶା ଆସି ହେଲି
ଶଶିବଦନା ଦୂର କଲି,
ଶରଣ ତା ବାହାରେ ନାହିଁ ମୋର କାହାରେ ସମନେ ବିସ୍ତରୁ ମହିଳା ରେ ।୩୦।

ଷଡ଼କ୍ଷୀଣନୟନା ମୋ ବିଚ୍ଛେଦ ବେଦନା ସହି ଧଇର୍ଯ୍ୟ ଧରିଥାଉ,
ଷଡ଼ର୍ଦ୍ଧନେତ୍ରକୃପାବଳରୁ ଯେବେ କୃପାପାତ୍ରୀକି ଭେଟିବି ମୁଁ ଆଉ ରେ
ବଳାହକ, ଷୋଡ଼ଶୀ ସଙ୍ଗ ନ ଛାଡ଼ିବି
ଷଟ୍କୁନ୍ତଳ ତା ସାଜିଦେବି,
ଷଡ଼ଅଷ୍ଟ-ଭୁବନେ ସୌଭାଗ୍ୟବନ୍ତରେ ଜଣେ ଲେଖାରେ ଲେଖା ହୋଇଥିବି ରେ ।୩୧।

ସାଗରମଧ୍ୟେ ଝାସି ବ୍ରତେ ମନାଇ କାଶୀବାସୀ ପ୍ରିୟାକୁ ପାଇଥିଲି,
ସେ ପୁଣ୍ୟ ଶେଷ ଅସି ହେବାରୁ ଘନକେଶୀ ଧନର ପାଶ ବିରଜିଲି ରେ
ବଳାହକ, ସତେ ପାଇବି ପୁଣି ତାକୁ
ସଂପ୍ରତେ ନଆସେ ମନକୁ,
ସନ୍ନ୍ୟାସବେଶ ଧରି ବିଶ୍ୱଭ୍ରମଣ କରି ଜପୁ ଯେ ଥିବି ତା ନାମକୁ ରେ । ୩୨ ।

ହେ ପ୍ରଭୁ ସଦାଶିବ କରିବା ମୋରେ ଶିବ ପ୍ରବାସ-କଷ୍ଟ କରି ନଷ୍ଟ,
ହଜାରସଂଖ୍ୟକରେ ଗଇଣ ଦେବି ଶିରେ ଚଳାପାଙ୍ଗୀରେ ହେଲେ ଭେଟ ହେ
ହୂରପର, ହେଲିଣି ଯାହା ମାର-ତାପେ
ହୋଇଛ ଅନୁଭବୀ ଆପେ,
ହିମାଳୟତନୁଜା ରୁଷିଲେ ଯାନ୍ତା ବୃଥା ପରିତାପ ହିଁ ସେହିରୂପେ ହେ ।୩୩।

କ୍ଷିତିପାଳ ତନୁଜ ବୀରବର ବିରଜରାଜସିଂହ ଶ୍ରୀଯୁବରାଜ,
କ୍ଷିପ୍ରେ କହଇ ରସେ ଯେବେ ଯିବ ସ୍ୱବାସେ ବୁଝିବି ମନସିଜ ଓଜ ରେ
ବଳାହକ, କ୍ଷିତିଭୂଷା ମୋ ଭାଗ୍ୟବଳେ
କ୍ଷୀଣବିସ୍ମାନେ ବଞ୍ଚିଲେ,
କ୍ଷୀରନୀରର ସମ ପୀରତି କରି କାମ ବଦନେ କାଳି ଦେବି ବଳେ ରେ । ୩୪ ।

ଲେଖକ : କବିସୂର୍ଯ୍ୟ ବଳଦେବ ରଥ

## ମୋହନା ଚଉତିଶା *

( ରାଗ—କଲ୍ୟାଣ ଆହାରୀ )

କଂସ ନଗରୀରେ ବିହରି ଶ୍ରୀହରି
ହଂସଗମନାଙ୍କୁ ସ୍ମରି ରେ,
କୁସୁମବଶିଖେ ବିଦ୍ଧ ହୋଇ ଦୁଃଖେ
ବୋଲନ୍ତି ମୋର ବାନ୍ଧବୀ ରେ, ମୋହନା;
କେତେ ଦୂର ଧାତା କଲା ରେ,
କି ଗୁଣ୍ଠି ରହିଲି ଯାହା ପାଶେ ନେତ୍ର
ପିଷ୍ଟଣ୍ଟି ହେଉ ନଥିଲା ରେ । ୧ ।

ଖମଣିନନ୍ଦନା- ତଟ (୧) ବାଟ ସୁନା-
ନିର୍ମିତ ଜଙ୍ଗମ (୨) ଲତା ରେ,
ଖୁଆମୁହାଁ ନବ- ନୀତେ ତ ନଥିବ
ତୋ ଶ୍ରୀଅଙ୍ଗ କୋମଳତା ରେ, ମୋହନା,
ଖଟ ପରେ ହଂସତୂଳରେ,
ଗୁରୁ ଅର୍ଦ୍ଧକାଳ ବରଜ ମୋ କୋଳ
ପହୁଡ଼ିଲେ ପଡ଼ୁ ଲୁଳ ରେ । ୨ ।

ଗଜେନ୍ଦ୍ର ଗରବ- ଗଞ୍ଜନଗମନା
ଅଞ୍ଜନ ନୀଳ କୁନ୍ତଳା ରେ,
ଗୁଣବତି ! ରସ- ବତୀମାନଙ୍କର
ଗୁରୁ ମୋ ନେତ୍ରପିତୁଳା ରେ, ମୋହନା,
ଗିରିତୁଙ୍ଗତରସ୍ତନା ରେ,
ଗୋରି, ତୁ ମୋ ଗତି ନିଖିଳ ଜଗତି
ଗିରି ! ତୁଳନାବର୍ଜ୍ଜନା ରେ । ୩ ।

---

* ଆଠଗଡ଼ର ରାଜା ବାଲୁଙ୍କେଶ୍ବର ହରିଚନ୍ଦନଙ୍କ ନାମେ ରଚିତ ।
(୧) ଖମଣିନନ୍ଦନାତଟ—ଯମୁନାକୂଳ । (୨) ଜଙ୍ଗମ—ସଂଚରଣଶୀଳ ।

ଘେନାଘେନ ବାଣୀ ଲୁହାସ୍ତୁ ଠାଣି
ଘାନକନ ଅନୁକମ୍ପା ରେ,
ଘନକେଶୀ ଅଶ୍ରୁ- ମଧ୍ୟା ସିନା ଜାଣୁ
ଶ୍ରୁତି-ମୋତି-ଟୁମ୍ପାକମ୍ପା ରେ, ମୋହନା,
ଘଡ଼ିଏ ନୋହେ ପାଶୋର ରେ,
ଘୃତାଚୀ ପ୍ରମୁଖ ଲେଖ ବାରବାମା
ନୁହନ୍ତି ତୋ ପାଦ ସର ରେ । ୪ ।

ଙରେଖି ମୋର ସ୍ତୁମୁକୁ ଆସିବାର
ଢଟେ ଙତମ୍ବ ମାବର ରେ,
ଙଦ ନ ଆଇ ନସ୍ୱନ ବୁଜ ମିଛେ
ଆଉଜାଲୁ ଅପସର (୧) ରେ, ମୋହନା,
ଙକଟକୁ ଧୀରେ ଆସି ରେ,
ନ ଜାତ ପ୍ରସୂନ- ଟସ ଖଞ୍ଜନ୍ତେ ମୁଁ
ନତନୁରେ (୨) ଗଲୁ ଭାସି ରେ । ୫ ।

ଚୁମ୍ବୁ ଚବୁକ ଚଟୁଳ-ପୟୋଧର-
ଚଟବାକେ ଦେଲୁ ପାଣି ରେ,
ଚରୁଷ ସେ ସୁଖ ଭୋଗ କଲୁ କିଛି
ନପାରନ୍ତ ପର ଜାଣି ରେ, ମୋହନା,
ଚିର ସୁଖାସ୍ୱାଦ ଅନ୍ତେ ରେ,
ଚହିଁକ ପଡ଼ିଲ ହୋଇ ଚନ୍ଦ୍ରାନନୀ
ଭିଡ଼ିଧଇଲୁ ରୁ ମୋତେ ରେ । ୬ ।

ଛକେ ଛକେ ତନ୍ଦ୍ରୁଁ ଛବି ଜଳଧର
ଛନ୍ଦ ପ୍ରତ ଅଙ୍ଗେ ଅଙ୍ଗ ରେ,
ଛପଲ୍ ଛଦଣ୍ଡ ଯାଏ ଫୁଲକାଣ୍ଡ
ସମର-ରସ ତରଙ୍ଗ ରେ, ମୋହନା,
ଜାଗରୂକ ଅଥ ହେଲୁ ରେ,
ଜରଜର କର ରସେ ମୋ ସନ୍ତାପ-
ନଗଷ୍ଟ ଜୁଗ୍ଲଇ ଦେଲୁ ରେ । ୭ ।

---

(୧) ଅପସର—ତକିଆ । (୨) ନତନୁ—କାମ ।

ଝଷଧ୍ୱଜ (୧) ଗଜ- କୁମ୍ଭ ତୋ ଉରଜ
ଜଟିଛି ତୋ ମନ୍ଦହାସରୁ ରେ,
ଝାଳବନ୍ଦ ବୃନ୍ଦ ଝରଇ ତନୁରୁ
ଝୁଲଝୁଲି ଆସ୍ୱାସରୁ ରେ, ମୋହନା,
ଝୁଲୁଥିବୁ ମାର-ମଦେ ରେ,
ଝଲକ ଲାବଣ୍ୟ ନେତ୍ରମାର୍ଗେ ଆସି
ଭରଣ ହେଲା ମୋ ହୃଦେ ରେ । ୮ ।

ଞତମ୍ବ-ବମ୍ବ- ଆଡ଼ମ୍ବର-ସମ୍ଭାର
ସପନୁ ଉଣ୍ଡେ ମେ କାହିଁ ରେ,
ନୟନ-କଳୁଷ ନୁହେ କ ଞଷେଧ
ଞଧୁବନ (୨) କାଳେ ସ୍ମରି ରେ, ମୋହନା,
ନାହିଁ ତୋପର ଯେ ସ୍ମର ରେ,
ନୀବୀ ଞସ୍ତେ ତୋର ଅର୍ଗଳ (୩) ଶିଶ୍ନଶ-
ପର (୪) ମନ୍ଦର ଗୋପୁର (୫) ରେ । ୯ ।

ଟୋକା ପଞ୍ଚଦଶ- ବୟସ୍କ ପରବେଶ-
ପଣ ଆନ୍ତ ତୋଟେତ ଘେର ରେ,
ଟୋପି-ମୃଗମଦ- ଟଳକଶୋଭିନୀ
ପଞ୍ଚଦଶୀ ଶଶି ପରି ରେ, ମୋହନା,
ଟେକାଇ କୁସୁମାଳିଟି ରେ,
ଟିକେ ପରସରେ ଭଲ ହେଲେ ସରେ
ସଂସାର ସୁଷମାଲଟ ରେ । ୧୦ ।

ଠହରିଥିବ ମୋ ଧନ ସଙ୍ଗ କେବେ
ନୋହିବ ବୋଲି ଅନ୍ୟଥା ରେ,
ଠାକୁରମାନଙ୍କ ପଦପୀଠରେ ମୁଁ
ଠୁକୁଆଇ ନତ ମଥା ରେ, ମୋହନା,
ଠକ-ପୁଙ୍ଗବ ଢଇବ ରେ,
ଠୁଳେ ମୋ ତରସ (୬) ଭରଣ ନକଲ
ଏ ଦେହ କାହିଁ ରହିବ ରେ । ୧୧ ।

---

(୧) ଝଷଧ୍ୱଜ—କନ୍ଦର୍ପ । (୨) ଞଧୁବନ—ରତକ୍ରୀଡ଼ା । (୩) ଅର୍ଗଳ—କିଳଣୀ ।
(୪) ଶିଶ୍ନଶପର—କନ୍ଦର୍ପ । (୫) ଗୋପୁର—ମନ୍ଦର (ଦ. ସ୍ୱରଣାସ୍ୱ) । (୬) ତରସ—ବେଗ ।

ତାଙ୍କ ମନୋହର ମଧ୍ୟାକୁ ତ ଦୂର
କରିଛୁ କନ୍ଦର୍ପ ହୃଦେ ରେ,
ଡାକିବ ମୁଁ ଏବେ କାହାକୁଟି କହେ-
ଶ୍ଳିଷ ! କ ରେ ବୋଲି ମୋତେ ରେ, ମୋହନା,
ଶମ୍ଭୁ (୧) ସାରସଲୋଚନା ରେ,
ତକା କରି ଧନ ଶିବ ମୋର ପାପ-
ଧଇବ ଭଲ ରଚନା ରେ । ୧୨ ।

ଛୋଟେ ତୋ ମଧୁର ସୁବାସ ଅଧର
ମଧୁରସ ନପାଇଲି ରେ,
ଛାଳେ ଫୁଲ କଙ୍କ- ପତ୍ରୀ (୨) ରଣରଙ୍ଗ
ହୋଇ କାଳ ପୁହାଇଲି ରେ, ମୋହନା,
ଭଲା ଚପଳ ନେତ୍ରାନ୍ତ ରେ,
ଛାଲ ମୋତେ ଧନେ ରଚିବାର ସ୍ମୃତି
ସ୍ୱପ୍ନ ହେଲ ପ୍ରାଣମିତ ରେ । ୧୩ ।

ଅଙ୍କରେ ପଙ୍କଜ- ନେତ୍ରା ବସି ମୋର
ଶାରଦ ରାକା (୩) ନଶିରେ,
ଇନ୍ଦୁ ଇନ୍ଦିରାକୁ ପ୍ରଶଂସିଲୁ ଧୀରେ
ଅଙ୍ଗୁଳିକ ଦେଲୁ ଘଷି ରେ, ମୋହନା
ଝଲୀକ କସ୍ତୁରୀ-ମସୀରେ,
ଏଥିକ କେ ପାଶବ ମା, ବୋଲି ଗଲୁ
ହସି ମୋ ତନୁରେ ମିଶି ରେ । ୧୪ ।

ତନୁରୁ ଅନ୍ତର ହୋଇବାରୁ ଡଳେ
ରୁ’ ତ ସହ ନପାରୁ ରେ,
ତରୁଣ ତମାଳ ତରୁକୁ ତରୁଣୀ-
ମଣି ! ପରିରମ୍ଭ (୪) କରୁ ରେ, ମୋହନା,
ତରକ ଛୋର ମରଜ ରେ
ତପନାସ୍ତୁ ମସ୍ତୁ ସ୍ରଜେ ମୀନା ପରି
ମୀନାକ୍ଷ, ! ଆଏ ମୁଁ ଭଜ ରେ । ୧୫ ।

---

(୧) ଶମ୍ଭୁ—ଶିଶୁ । (୨) ଫୁଲକଙ୍କପତ୍ରୀ—କନ୍ଦର୍ପ (ଫଲଶରଧାରୀ) । (୩) ରାକା—ପୂର୍ଣ୍ଣିମା । (୪) ପରିରମ୍ଭ—ଆଲିଙ୍ଗନ ।

× × × ×
× × ×

ଥର ମନମଥ- ଶରେ ଥରେ ଥରେ
ସରଘାତଥାଏ ମୂର୍ହି ରେ, ମୋହନା,
ଥିଲେ ତୋ ଗ୍ଲାମୁରେ ବସିରେ,
ଥାଟ ପର ମାତ୍ର ଥିସୁଥିଲେ ଗ୍ଲଭ-
ଘାଏ ସ୍ମର-ଚାପ-ଗୁଣି ରେ । ୧୬ ।

ଦନେ ଦନେ ଦନ- ସାଧିତ ଦୁହିତା (୧)
ଛଟ ଅଟବୀରେ (୨) ପଶି ରେ,
ଦୁର୍ହେ ମିଶି ଫୁଲ ତୋଳବା କାଳରେ
କ ରସ ଘାଏ ବରଷିରେ, ମୋହନା,
ଦୁରୂପ ସେ ଦେବତାଙ୍କୁ ରେ,
ଦବୀ ଦ୍ରବ୍ୟମାନ ମିଳୁ, ତୋ ସମାନ
ରସିକା କେ ଦେବ ତାଙ୍କୁ ରେ । ୧୭ ।

ଧସ୍ସ ପୁଂନାଗ ଦଂସ୍ସକୁ ମୋ ଶିରେ
ବୋଲଣ ତାଙ୍କୁ ବୁ ଝବ ରେ,
ଧନ ମୋ କୋଡ଼ରେ ଥାଇ ମୋ କୋଡ଼ର
ତୋଷକୁ କରୁ ମାଧବ ରେ, ମୋହନା
ଧାର୍ମି କପଣକୁ ଜାଣି ରେ,
ଧର ପ୍ରପଦକୁ (୩) ମଥା ଘାଏ ଲକ୍ଷେ
ଚୁମ୍ବଇ ମୁଁ ଗଣି ଗଣି ରେ । ୧୮ ।

ନକ୍ଷତ୍ରମଣ୍ଡଳ ଚୁମ୍ବି-ବୃକ୍ଷ ତେଳ
ଶୋଭନୀ ବର୍ତ୍ତୁଳ ତଳେ ରେ

× × × ×
× × ×

ଲଶାମୁଖେ ଲଜ୍ଜେ କର ରେ,
ନର୍ଜାଗ୍ରନାଥ ନତମୃଁ ମା ପର
ବିପଞ୍ଚକ (୪) ଅଙ୍କେ ଧର ରେ । ୧୯ ।

(୧) ଦନ ସାଧିତ-ଦୁହିତା—ସୂର୍ଯ୍ୟ ଦୁହିତା—ଯମୁନା । (୨) ଅଟବୀ—ବନ । (୩) ପ୍ରପଦ—ପାଦ । (୪) ବିପଞ୍ଚ—ବୀଣା ।

ପ୍ରଶଂସାରେ ମୋର          ପୂର୍ବ ରହିବାର
ଚରିତରସ ଚର୍ଚ୍ଚାରେ,
ପଶ୍ଚିମେ ପକାଇ          ଥିଲୁ ମୋର ବେଳେ
ମାଳବ-ରାଗଭୂଷିତା ରେ, ମୋହନା,
ପହିଲି ରୁ ଦିନ ଶେଷେରେ,
ପୃଥୁ ଅପସର          ପଛେ ଥିଲି ତୋର
ପ୍ରିୟ ସହଚରୀ ବେଶେ ରେ । ୨୦ ।

ଫୁଲ୍ଲଇ ପୁଲକ          ମୁକୁଳେ ପ୍ରଗାଢ଼
ପ୍ରମୋଦ ଆଧିକ୍ୟ ବଳେ ରେ,
ଫଣୀ ପଶୁ ଶିଶୁ          ଶ୍ରବଣ ଶ୍ରବଣ
ସଙ୍ଗୀତେ ରସିବା ବେଳେରେ, ମୋହନା,
ଫାଟିଲା ମୋ ଧୃତି-ଘଟି ରେ
ଫୁଲ୍ଲ (୧) କଣ୍ଠ ମୁଖେ          ଚୁମ୍ବିଲି ତୋହର
ଉତ୍ତଧର ଅଙ୍ଗୟଷ୍ଟି ରେ । ୨୧ ।

ବେଢ଼ିଲା ସିତାର          ତାମ୍ବୁଲ ବଲ୍ଲକୀ
ପିନାକୀ ଚନ୍ଦ୍ରବାଦନୀ ରେ,
ବଂଶୀମୁଖ ଶଙ୍ଖ          ଝଞ୍ଜରୀ ସାରଙ୍ଗ
କିଙ୍କିଣି ମର୍ଦ୍ଦଳ ଗିନି ରେ, ମୋହନା,
ବଜାଉଥିଲେ ତୋ ସଖୀ ରେ,
ବ୍ରୀଡ଼ାସ୍ଥବେ ନତ          ବଦନରେ ସ୍ମିତ
ଧରି ପଳାଇଲେ ଦେଖି ରେ । ୨୨ ।

ସ୍ୱ-ରଙ୍ଗ ବନ୍ଧୁର          କଳାସ୍ଖଳନାଦ
କଉରୂଜ ମହୋତ୍ସବ ରେ,
ଭରତ କଳ୍ପିଁ          ସେ ଗଢ଼ ଶିବଙ୍କ
ଅଗତଙ୍କ ପ୍ରତିବାଦ ରେ, ମୋହନା,
ଭାଗ୍ୟହୀନ ଦଶା ଏବେ ରେ,
ଭଗାଇ ହସାଇ          ଦେଉଛୁ ଉସାଇ
ତୋ ବିଚ୍ଛେଦ-ମହାର୍ଣ୍ଣବେ ରେ । ୨୩ ।

---

(୧) ଫୁଲ୍ଲ—ପ୍ରସ୍ଫୁଟିତ ।

ମାନସେ ମୋହର ନଥିଲା ମଦନ
ଚେଳେବଦ୍ୟା କଳ୍ପବଲ୍ଲୀ (୧) ରେ,
ମଧୁରାଧରାମୃତ- ପାନ ଏପରି
ମଧୁର ହୋଇବ ବୋଲି ରେ, ମୋହନା
ମନ୍ଦମନ୍ଦ ସ୍ମିତମୁଖ ରେ,
ମାରି ନ ପକାଇ ମରଣ ପକାଇ
ଦେଲି ମୋର ମୂଳ-ସୁଖ ରେ । ୨୪ ।

ଯନ୍ତୁ ଶତ ଶତ କଲେ ହେଲେ ସ୍ଥିତ-
ସ୍ପୃହା ଯା ନଦେଲୁ ଧରି ରେ,
ଯହ ଧୂର୍ଜଟିର ସ୍ମର-ଶଲ୍ୟ ଶର
ମାସ୍ୱାଦବ୍ୟା ରୁଦ୍ଧ ପରି ରେ, ମୋହନା
ଯଶୋହୀନ ମୋ କରମ ରେ,
ଯାତ ଯାମ କରି ଦେଉଛୁ ମନସ୍ତ-
ମଣ୍ଡନା ତୋ ଯତ୍ନୋଦ୍ୟମ ରେ । ୨୫ ।

ରତିରସାସ୍ତ୍ରିନ ସୁମସ୍ୱେ ଚଞ୍ଚଳା
ସ୍ୱବ ନୟନେ ନ ଥାଇ ରେ,
ରସ ଶରତ୍କୃତ- ବ୍ରଣ ତନୁ ସ୍ମର
ପୂର୍ଣ ଅଳପ ବଥାଇ ରେ, ମୋହନା
ଲୁଚିଲା କରି ଶ୍ରୀମୁଖ ରେ,
ଲକ୍ଷି ତାରକା ମନ୍ଥର ନେଥାନ୍ତରେ
ସପ୍ତି ତେ ଦେଉ କ ସୁଖ ରେ । ୨୬ ।

ଲକ୍ଷ ଲଡ଼ୁ ଲମ୍ବୋ- ଦରଙ୍କ ଅଧରେ
ଲାଗି କରାଇବା ଫଳରେ,
ଲୋକାଲୋକ ଶିରି ସିନା ଗୌର କରି
ମଣ୍ଡିଛୁ ତୋ ବକ୍ଷସ୍ଥଳ ରେ, ମୋହନା
ଲୋକ ବୋଲେ ପୟୋଧର (୨) ରେ,
ଲାଗେ ଅତ ଭାର ଯେଣୁ ମେରୁ ପରି
ହେବାରୁ ସମ୍ପୃକ୍ତା ହାର ରେ । ୨୭ ।

---

(୧) କଳ୍ପବଲ୍ଲୀ—କଳ୍ପଲତା । (୨) ପୟୋଧର—ସ୍ତନ ।

ବହୁଳବଳ୍ଲୀ ବାସରେ ସନେ ହୋଇ
ବଶ୍ୱକେତୁ ରସାଭୁସ ରେ
× × ×

ତମ୍ବୁୁାଧରୁ ଦେଇ ମଧୁରେ,
ବଦେଶ ପର ରେ ସୁଖଦ ହେବ କ ?
ବୋଲ ହସୁ ନବବଧୂ ରେ । ୨୮ ।

ଶଚୀ ଶତକରୁ (୧) ତୁହେଁ ସେଉଁ ସୁଖ
ନ ଲଭନ୍ତ ଅଭିଳାଷ ରେ,
ଶଶୀ ସକଳାଙ୍କ ଙ୍କେର ପ୍ରସାଦୁଁ
ହୋଇଥିଲ ଆମ୍ଭ ବଶ ରେ, ମୋହନା
ଶାଚଘାତମା ଏ ଦଶା ରେ,
ଶମ୍ଭୁ ପ୍ରସାଦକୁ କରଦେଲ ଶଶ-
ବଷାଣ ସଦୃଶ ମୃଷା (୨) ରେ । ୨୯ ।

ଷଟ୍‌ପଦ (୩) ପ୍ରବା ପର ଆଚରବା
ଚରଭ ମୋର କହନା ରେ,
ଷୋଡ଼ଶରୁ ଊଣା ବୟସୀରେ କଣା
କୋମ୍ଭର ଏ ପ୍ରାଣ ସିନା ରେ, ମୋହନା
ଷଡ଼ଙ୍ଘ୍ରି-ମାଳ ଭୁଲନା ରେ,
ଷଣ୍ମୁଖ (୪) ଜନକ ବପକ୍ଷ-ତଟିନୀ
ତରବାକୁ ତୁ ମୋ ଭେଳା ରେ ।୩୦।

ସରସିଜସୂନୁ (୫) ସରଜବ ନାହିଁ
ସରସ ହେବା ସଂସାର ରେ,
ସଜିଲେ ସବଂଥା ସମ୍ଭୃତ କରବ
ନାହିଁ ଚହିଁ ସ୍ନେହସାର ରେ, ମୋହନା
ସ୍ନେହକୁ ଯେବେ ସଜିବ ରେ,
ସ୍ନେହ ବରହରେ ସେହ ଷଣେ ସର-
ଜବାକୁ ଉପାସ୍ଥ ଥିବ ରେ ।୩୧।

---

(୧) ଶତକ୍ରତୁ—ଇନ୍ଦ୍ର । (୨) ମୃଷା—ମିଥ୍ୟା । (୩) ଷଟ୍‌ପଦ—ଭ୍ରମର ଷଡ଼ଙ୍ଘ୍ରି ।
(୪) ଷଣ୍ମୁଖ—କାର୍ତ୍ତିକେୟ । (୫) ସରସିଜସୂନୁ—ବ୍ରହ୍ମା ।

ହିଣ୍ଡିର (୧) ହାର ହୀରକ ହିମଚନ୍ଦ୍ର
କୁମୁଦ କର୍ପୂରହାସ ରେ,
ହଇରାଣ ବଡ଼ ହେଲି ତୋତେ ଦୂରେ
ହରାଇ ହୋଇ ପ୍ରବାସୀ ରେ, ମୋହନ।
ହେବ ହରିକୃପା ଲବ ରେ,
ହେମସାର ଗୋରା ମୃଦୁ ତନୁଟିଏ
ମସାର ଯୁତ ହୋଇବ ରେ ।୩୨।

କ୍ଷଣଦା (୨) ରଥ- ବାନ୍ଧବମୁଖୀଙ୍କର
ଶରଣେ ବ୍ରଜେନ୍ଦ୍ରସୁତ (୩) ହେ,
କ୍ଷୋଭକୁ ପୁନ- ଠାରୁ ଅଥ ଯାର୍ଘ
ମାନ ହୋଇ ସଂକଳ୍ପିତ ହେ, ସୁଜନେ
କ୍ଷମ ନୋହିବ ହରଣେ ହେ,
କ୍ଷୀଣାନନ୍ଦ ହେଲେ ଜନ୍ମଦେବ ହରି-
ଚନ୍ଦନ ଭୂପତି ଭଣେ ହେ ।୩୩।

---

ଲେଖକ : ବଷ୍ଟୁ ଦାସ

## ପ୍ରବେଶ ଚଉତିଶା

( ରାଗ—ବଙ୍ଗଳାଶ୍ରୀ )

କେବଣ ନାଏକ ବିଦେଶରେ ଥାଇ
କଠିନ ବେଦନା ପାଇ,
କେଉଁ ଭାଗ୍ୟରୁ ପ୍ରବାସୁ ଆସି କହେ
ପ୍ରିୟାକୁ କୋଳେ ବସାଇ ।
କୋମଳା ହୋଇ କଠିନ କାମକାଣ୍ଡ
କେତେ ସହିଲୁ ସୁନ୍ଦରୀ,

---

(୧) ହିଣ୍ଡିର—ସମୁଦ୍ରଫେଣ । (୨) କ୍ଷଣଦା—ରାତ୍ର, କ୍ଷଣଦାରଥବାନ୍ଧବ—ଚନ୍ଦ୍ର ।
(୩) ବ୍ରଜେନ୍ଦ୍ରସୁତ—କୃଷ୍ଣଚନ୍ଦ୍ର ।

କଳାକର (୧) ଯେ ଶଶୀର ବଦନ୍ତଥିଲ୍ଲ
ସଦ୍ବଲ୍ଲ କେମନ୍ତ କର ।୧।
ଖେଳନ୍ତା ଖଂଜନ ଚଂଚଳ ନୟନେ
ଲୁଅ (ଲୁହ) ଥାଇ ପର ପୁଣ,
କ୍ଷଣ କ୍ଷଣକେ ଦୁଃଖ-ଝଂଜାବାତେ
ପଡ଼ୁ ପର ବସୁନ୍ଧରା ।
ଖଣ୍ଡେ ଦୂରେ ଆସି ଚନ୍ଦନ ଯୋଉଠେଲ
ହୁଅଇ ପର ଭସ୍ମଦ,
କ୍ଷୀରୋଦଶ୍ରୀ ରଙ୍ଗ ଢବସଯାକରେ
କ୍ଷଣ୍ଡନ ନୋହେ ବିଷାଦ ।୨।
ଗଜେନ୍ଦ୍ର ଗମନା ମନ୍ଦ ଗନ୍ଧବାତ
ଚନ୍ଦନାଚଳରୁ ଆସି,
ଗାଇଶକ ଗୋଷ୍ଠ ସୁନ୍ଦରୀ ତନୁକୁ
ଦହୁଥାଇ ଦବାନଳ ସି ।
ଗୁଣମଣି ମୋହେ ଚରିତ ସତତେ
ଗୁଣି ଗୁଣି ସିନା ସ ,
ସର୍ବଂସହା ତୋଓ ଗୁଣ ମୁଁ ସୁମର
କ୍ଷଣେହେଁ ପ୍ରାଣ ନରହୁ ।୩।
ଘନ କଠିନ ପୀନ ବର୍ତ୍ତୁଳ କୁଚେ
ଦେଉଥାଉ ପଦ୍ମଦଳ,
ଯେବେଳ କ୍ଷଣେ ମଳିନ ହୋଇଯାଇ
ବାଧଇ ଯଥା ଅନଳ ।୪।
ନୀଳ ଇନ୍ଦୀବର (୨) ସୁନ୍ଦର ନୟନେ
ନଥାଇ ପର କଜ୍ଜ୍ୱଳ,
ନବ ବଧୂଲି ପ୍ରବାଳ ବିମ୍ବାଧରେ
ନ ଥାଇ ପାନ ଉଜଳ ।
ନିଶାକରଅର୍ଦ୍ଧ (୩) କପାଳରେ ଚନ୍ଦ
ନ ଥାଇ ଗନ୍ଧ ତିଳକ,
ନୋହୁଥାଇ ପର କୁନ୍ତଳ ଉଜଳ
ଏ ମନୋହର ଅଳକ ।୫।

---

(୧) କଳାକର—ଚନ୍ଦ୍ର । (୨) ଇନ୍ଦୀବର—ନୀଳ ପଦ୍ମ । (୩) ନିଶାକରଅର୍ଦ୍ଧ—ଅର୍ଦ୍ଧଚନ୍ଦ୍ର ।

ସ୍ୱପନସଞ୍ଚର ସମ୍ଭବା ନପାରି
ଶୂନ୍ୟ କରିଥାଉ ଗଲା,
ଚଞ୍ଚଳ ଏ ନେତ୍ର କିଛୁ ନ ଦେଖଇ
ନଥାଇ ଚପଳ ଲୀଳା ।୬।

କ୍ଷୋଭ ପରି ଅନୁକ୍ଷଣେ ପାଉଥାଉ
ପକାଉଥାଉ ନିଃଶ୍ୱାସ,
କ୍ଷୀଣ ରଙ୍ଗ ଶ୍ୱେତ- ପତ୍ର ଶ୍ୱାସଘାତେ
ମଳିନ ଦଶନବାସ (୧) ।୭।

ଜ୍ୟୋତିଧର ମୋତି ହାର ପରି ସ୍ତନ
ଉପରେ ହୋଇଲା ଚୂନ,
କାଳଅଗ୍ନି ପରି ବିରହ ଅନଳ
ଜାଳ ଦେଲା ଏ ନୟନ ।
ଯେତେବେଳେ ହେଁ ଦର୍ପଣେହେଁ ବସିଥାଉ
ପଟ (୨) ପରି ଲିହୁଥାଉ, (୩)
ଜଳରୁହ (୪) ଦଳ ସୁନ୍ଦର ନୟନେ
ଲୋତକ ପରି ପୁରେଉ ।୮।

ହିଳ ଆନନରେ ଗଳିପଡ଼ୁଥାଇ
ବାହାରୁ ପରି ବଳୟ,
ହୋଇ ବସନକୁ ଓଦା ପରି କରୁ-
ଥିଲା ସ୍ୱେଦ ସମୁଦାୟ ।
ହଂସବାସକ (୫) ଦଳମାନ ସଙ୍କୁ
କରିଥାନ୍ତି ସିନା ସଖୀ,
ହଲକ ଅନଳ- ଶିଖି ପରି ମଣି
କଣ୍ଠୁରେ ବନଜମୁଖୀ (୬) ।୯।
ନିର୍ମଳ ଗଣ୍ଡରେ ମକର ନଥାଇ
ମଣ୍ଡୁଥାଉ ଲୋଥ (ଲୁହ) ଧାରୀ,
ନୀରଜ (୭) କଳି ପୃଥୁଳ ସ୍ତନ ଶିରେ
ଯାଇ ପଡ଼ୁଥାଇ ପରି ।

---

(୧) ଦଶନବାସ—ଓଠ । (୨) ପଟ—ଚିତ୍ର । (୩) ଲିହୁଥାଉ—ଲେଖୁଥାଉ ।
(୪) ଜଳରୁହ—ପଦ୍ମ । (୫) ହଂସବାସକ—ପଦ୍ମ । (୬) ବନଜମୁଖୀ—ପଦ୍ମମୁଖୀ ।
(୭) ନୀରଜ—ପଦ୍ମ ।

ନ ପାଶଲୁ ହର — ଦୁଃଖ ନୀରରୁହା- (୧)
ସୁବାସୀ ମୋହର ପାଇଁ,
ନାହିଁ ଆନ କଥା — ମୁଁ ଜାତ ହୋଇଲି
ଛତେ ଦୁଃଖ ଦେବା ପାଇଁ ।୧୦।

ଟଳିଆଇ ସିନା — ଏ ଜବସ୍ତସ୍ତର
ପୁଷ୍ପ ଜବର ନଥାଇ,
ଟେକିଥାନ୍ତୁ ଆଣ — ପୁଣି ଆସି କେଶ
ମୋହ ବାନ୍ଧିଦେବା ପାଇଁ ।୧୧।

ଠା-ଠିକହାସୀମାନେ — ସିନା ପ୍ରବୋଧ-
ମାନ କହୁଥିଲେ ଜଗି,
ଠାକୁରାଣୀ ହୋଇ — ଠିକ ବେଦନାକୁ
ପାଇଲୁ ମୋ ପ୍ରୀତି ଲଗି ।୧୨।

ଡାଳିମ୍ବବୀଜ — ଦଶନୀ ହୀନବାସ
ସହିଲୁ କେମନ୍ତ କରି,
ଡମ୍ବରୁମଝୀ ରେ — ଯେଣୁ ଏ ବସନ
ନଥିବା ସହି ନପାରି ।

ଢୋଲାପ୍ରତିମା ରେ — ମଂଜିର (୨) ଚରଣେ
ଢେକିପାଇଁ ଯେଣୁ ଅବା,
ଡରିଇଥିଲି ମଦନ — ସେ ବେଦନା
ଇତର ନୋହେ ସହିବା ।୧୩।

ତଳିଲି ବାସି ସର- — ସିଜ ପରସ୍ତେ
ନରସ ଦଶୁଥିଲି ମୁଖ,
ଡାଳିଥାନ୍ତୁ ପାଣି- — ପଲ୍ଲବ ଥୋକାଏ
ସମସ୍ତ ବସ୍ତୁର ଦୁଃଖ ।

ତମ କହୁନାହିଁ — ସୁଶୀଳା ! ତୋ ଦେହ
ସହିଲା ଏତେ ବେଦନା,
ଢଳଢଳ ପଦ୍ମ- — ପତ୍ର ନୀର ପ୍ରାୟେ
ପ୍ରାଣ ହେଉଥିଲା ସିନା ।୧୪।

---

(୧) ନୀରରୁହ—ପଦ୍ମ । (୨) ମଂଜିର—ନୂପୁର ।

ଅଣ୍ଡମଧ୍ୟମାରେ ଅବା ଘନକାଳ
କେମନ୍ତ ପ୍ରକାରେ ନେଲୁ,
ଅନାସ୍ୱରେ ଘନ- କୋଳରେ ତଡ଼ିତ
କେମନ୍ତ କର ଦେଖିଲୁ ।
ଅଣସହ୍ରଣ ଅମ୍ବୁଦ (୧) ଘୋର ରବେ
କର୍ଣ୍ଣେ ସିନା ପାଣି ଦେଲୁ,
ଏଣୀନୟନା (୨) ମୋ ପ୍ରୀତିଫଳ କାମ-
ଅନଳେ ଦେହ ଦହିଲୁ ।୧୫।

ତୁଙ୍ଗ ଘଡ଼ଘଡ଼ି ପଡ଼ିବା ସମୟେ
ମୋତେ ପଡ଼ି ନ ଜାଣିଲୁ,
ଦୃଢ଼ ହୋଇ ପ୍ରାଣ ତୁ ଆଶା ନ କର
ସାହସ କରି ଶୁଣିଲୁ ।
ତରସ୍ତ ହୋଇ ତରଳତର ନେତ୍ର
ନବଢ଼ କରି ବୁଜିଲୁ,
ତଡ଼ିତକୁ (୩) ବୃଦ୍ଧି ଏମନ୍ତ କାଳରେ
କେମନ୍ତ ହୋଇ ବଞ୍ଚିଲୁ । ୧୬ ।

ଥାଇ ଥାଇ ଶିରି ଖିର ଆରୋହଣେ
ଡାକନ୍ତି ଯେ ବହିଁଣ, (୪)
ସ୍ଥୂଳ ନିତମ୍ବୀ ସେ କାଳେ ମହାକଷ୍ଟେ
ରୁହାଇଥିବୁ ପରାଣ ।
ଥିର ରଜନୀରେ ଘୋର ବରଷାରେ
ସଦନ ଭିତରେ ପଶି,
ଥୋଇଲୁ ଦେହ ଯେତେ କଷ୍ଟେ ସାଷ୍ଟମ
ହା-ହା ରେ କୁଟିଳକେଶୀ । ୧୭ ।

ଦର୍ଦ୍ଦୁର ଦୁରଦୁର ରବ ସେ କାଳେ
ବରଷାକୁ ହୋଇ ସଙ୍ଗୀ,
ଦଣ୍ଡ-ଦଣ୍ଡକେ ପଡ଼େ ମାରପଦ କ
କାତର କରଇ ଅଙ୍ଗୀ ।

---

(୧) ଅମ୍ବୁଦ—ମେଘ । (୨) ଏଣୀନୟନା—ମୃଗନୟନା । (୩) ତଡ଼ିତ—ବିଜୁଳି ।
(୪) ବହିଁଣ—ମୟୂର ।

ଦ୍ୱିଗୁଣ ଶୁଭଇ    ଶିଖିକଣ୍ଠଧ୍ୱନି
ନାଟିକା ଯେ ଚନ୍ଦ୍ରକଳା,
ଦୁଃସହ ଏ ଦୁଃସମୟେ    କେତେ ଦୁଃଖ
ସହିଲୁ ବାଳା ସୁଶୀଳା । ୧୮ ।

ଧାତ୍ରୀମାନଙ୍କୁ ତୁ    ଅନାଇ ନ ଥିବୁ
କରୁଅଛୁ ଅନୁମାନ,
ଧୀରଗମନା ଯେ    ଏମନ୍ତ ନ କଲେ
ନ ରଖିଥାନ୍ତୁ ଜୀବନ ।
ଧାଡ଼ି ଧାଡ଼ି ହୋଇ    କଦମ୍ବ ଫୁଟିଲା
ଏହା ଯେ ଦେଖିଲୁ ନାହିଁ,
ଧାତା ମୋ ପ୍ରାଣ    ଏତେ କାହିଁ ରଖିଲା
ମଦନ-ମୁକୁର ବୃହି । ୧୯ ।

ନୀରଦ କାଳ ଯେ    ଦିବସେ ଅନ୍ଧାର
ନ ବୁଝିଲୁ ଭଲ କଲୁ,
ନୀରଜାକ୍ଷୀ ରକ୍ଷା    ପାଇଲୁ ମୋତେ
ଶମନ ସଦନୁ ଆଣିଲୁ ।
ନବ ବିଜୁଳିତ    କମ୍ପିଲା ପବନ
ଲାଗନ୍ତି ଯେବେ ତୋ ଦେହେ,
ନଳିନୀ ପଲ୍ଲବ (୨)    ଶଯ୍ୟା ତୋତେ କେ
×    ⊠    ⊠ । ୨୦ ।

ପାଇଲୁ ମହା-    ପରମାଦ ବରଷା
ହା-ହା ରେ ମିଳିନ୍ଦନେତ୍ରା,
ପ୍ରଚଣ୍ଡ ପବନ    କଦଳୀକାଣ୍ଡକୁ
ଶୁଙ୍କ ସାତକୁମ୍ଭ ଗାତ୍ରା ।
ସତେ ପାଇବି ତୋ    ଦର୍ଶନ ଜୀବନେ
ମନରେ ଏତେ ନ ଥିଲା,
ପରମେଶ୍ୱରଙ୍କ    ଦୟାକୁ ମହିମା
ଏଠାରେ ବଡ଼ ଦିଶିଲା । ୨୧ ।

---

(୧) ପବି—ବଜ୍ର (୨) ନଳିନୀ ପଲ୍ଲବ—ପଦ୍ମପତ୍ର । ସାତକୁମ୍ଭ—ସୁବର୍ଣ୍ଣ ।

ଫୁଟଇ ବୋଲି          ପ୍ରାଙ୍ଗଣରେ ମାଳତୀ
          ଲତା ଉପାଡ଼ିଲେ ସଖୀ,
ଫେଡ଼ି ଯେ ଦେଲେ          ପିଞ୍ଜରୁ ଶୁଢକଣ୍ଠ
          ଏଣୁ ଛନ୍ତି ତୋତେ ରଖି ।
ଫୁଲ୍ଲାରବିନ୍ଦ          ଲପନେ ଧନେହେଁ ତ
          ଦେଖି ନ ଥିବୁ ପ୍ରାଙ୍ଗଣ,
ଫୁଟେ କହୁଅଛୁ          ପ୍ରାଣ ରଖିବାକୁ
          ଏହୁ ହୋଇଲି କାରଣ । ୨୨ ।

ବସନ୍ତ କୋକିଳ-          ବଚନୀ ଦୁଃଖ ହିଁ
          କେତେ ପ୍ରକାରେ ସହିଲୁ,
ବାଲିଶ (୧) କାନ୍ତର          ସେନେହ-ଫଳରୁ
          ଏତେ ଯାତନା ପାଇଲୁ ।
ବିଧାତା ଲବଣି-          ପ୍ରଥମାକୁ ଦେଲି
          ପ୍ରଚଣ୍ଡ ଚଣ୍ଡ କିରଣ,
ବନ-ଅନଳ          ଅଙ୍ଗରେ ଉଷ୍ମ କଲି
          ଶୁଖିଲାର କୃଶ ତୃଣ । ୨୩ ।

ଭୂଢପରଧର (୨)          ସମ କୁଚ ବନ୍ଧୁ
          ଭବନେ ପାଇଲୁ ପ୍ରାଣ,
ସ୍ୱବମୀ ଏକ          ଚନ୍ଦ୍ରକଳା ପରସ୍ତେ
          ଏବେହେଁ ହୋଇଲୁ କୃଶ ।
ସ୍ୱର୍ଗିଳି ସବୁ          ଆଶଙ୍କା ମୋ ମନରୁ
          ଅନାଇ ଶ୍ରୀମୁଖ ଇନ୍ଦୁ,
ଭରସା ହୋଇଲି          ଆଜ ପାରହେଲି
          ମଦନ-କଦନ (୩)-ସିନ୍ଧୁ । ୨୪ ।

ମୁଖକମଳ          ମୀନ ଖଂଜନନେତ୍ରା
          ସୁନାର ଦାହ କନକ,
ମହା ମଂଜୁଳ          ହୁଅଇ ଯେମେ ଯେମେ
          ମୂଲ୍ୟ ହୁଅଇ ଅଧିକ ।

---

(୧) ବାଲିଶ—ମୂର୍ଖ,ମୂଢ଼ । (୨) ଭୂଢପରଧର—କୈଳାସ ପର୍ବତ । (୩) କଦନ—ଦୁଃଖ ।

ମହାମଣି ଯେବେ ଶାଣେ ଶାଣ୍ଡି ହୋଏ
କାନ୍ତି ଅଧିକ ବଢ଼ଇ,
ମୁକୁତାଦଶନା ଏ ଦୁଃଖ ପାଇ ସୁ-
ଷମା କେଣିକ ନ ଯାଇ । ୧୫ ।

ଜାଣୁ ମଣି ମୋର ଦ୍ରୁପଦ୍ୱଣସ୍ୱରୂପ
କଣ୍ଠର ରତନମାଳା,
ସତନ ଥଳକ ଲଲାଟ ଉପରେ
ନୟନ ବେକ ପିରୁଳା ।
ଯେତେ ଦିନ ତୋହ୍ୱ ପାଶେ ଦାସ ହୋଇ
ଥିବ ଚକୋରଲୋଚନା,
ଜାଣିଥିବୁ ମୋହ୍ୱ ପ୍ରାଣ ତେତେ ଦିନ-
ଯାଏ ପ୍ରାଣରେ ଗଣନା । ୧୬ ।

ରଜନୀ-ଦିନ ଏ ଲାବଣ୍ୟ ଲପନ
ନୟନରେ ଦିଶୁଥାଇ,
ରସନଧି ଦୁଃଖ ପାଇବା ବସ୍ତୁର
ଦଣ୍ଡେ ମନୁ ନ ଗୁଡ଼ଇ ।
ରମଣୀରତ୍ନ ଚବୁକେ କର ଦେଇ
ଚନ୍ଦ୍ରମୁଖ ଟେକବାର,
ସ୍ନେହେ ଅଧିକ ହୋଇ ମନେ ପଡ଼ଇ
କେମନ୍ତେ ଯିବ ପାଶୋର । ୧୭ ।

ଲାବଣ୍ୟ ଆରନଧି ଚନ୍ଦ୍ର ସୁକେଶୀ
ପାଇଲୁ ରୂ ଅବା କ୍ଲେଶ,
ଲଳିତ ଲପନେ ଅନାଇବାକ୍ଷଣେ
ବଢ଼ିଲ ମୋର ଆୟୁଷ ।
ଲପନ ମୋହର ବସ୍ତୀର୍ଣ୍ଣ ହୋଇ ଯେ
ନୟନରେ ଦିଶୁଥାଇ,
× ※ ×
କ କ ବସ୍ତୁର ହୁଅଇ । ୧୮ ।

ବିଶେଷ କୃଶ ଯେତେବେଳେ ଘଣଇ
କେତେ ଛନ୍ନ ହୁଏ ମନ,
ବନଜବଦନୀ ଏହୁ ବାଣୀ ଶୁଣି
ଲୁହ ଚେଜିଲ ବଦନ ।
ବିଧୁ ମଣ୍ଡଳେ ପଶିକି ଖଞ୍ଜରୀଟ
କରଇ ଶୋଣ (୧) ବର୍ଜନ,
ବିରି ଅନୁରାଗ- ନଦୀ ବୃଦ୍ଧି କଲା
ନୟନ ତଟ ଲଙ୍ଘନ । ୨୯ ।

ସୁନ୍ଦର ନୟନ- ସରୋଜରେ କିବା
କଳା ଡୋଳା ମଧୁକର,
ସରାଗେ ମଧୁପାନ କରି ନ ପାରି
କଛି ହୁଅଇ ବାହାର ।
ସୁଶୀଳା ନାୟିକା ମୁଖଚନ୍ଦ୍ର ସୁଧା
ନେତ୍ର ଚକୋର ପିଇଲ,
ସମ୍ଭାଳି ନ ପାରି ବିତୃଷ୍ଣ ହୋଇ କି
ସୁଧା ଉଦ୍‌ଗାର କଲ । ୩୦ ।

ସୁନ୍ଦରୀରତ୍ନ- ସରୋଜ ନେତ୍ରନୀର
ଦେଖି ବିସ୍ମିତ ପୁରୁଷ,
ସରି କରି ମୋହ ଦୁଃଖିତ ମନରେ
ଘେନିଲ ବୋଲି ହରଷ ।
ଶଶଧର ସମ ସୁନ୍ଦର ଆନନେ
ଗଣ୍ଡ ନୟନର ନୀର,
ସରାଗେ ଆପଣା ଗଣ୍ଡରେ ପୋଛିଲ
ଚିବୁକରେ ଦେଇ କର । ୩୧ ।

ସରସୀରୁହହାସୀ ସବୁ ବେଦନା
ନ କହିଲେହେଁ କହିଲ,
ସମସ୍ତ କରି ତ ନାୟକ ବେଦନା
ଏ କହିଲରୁ ଜାଣିଲ ।

---

(୧) ଶୋଣ—ରକ୍ତ ।

ଶମନ ଶମନ- ମୂର୍ଖ ଲେଉଟିଲେ
ଦାନ ବିଧାନ ହିଁ କଲେ,
ସନ୍ତୋଷ ହୋଇ ଦୁହେଁ ଦୁହିଁଙ୍କୁ ହିଁ
ଚମ୍ପକ ଦାନ ସେ ଦେଲେ । ୩୨ ।

ହରଷେ ରସନା ବ୍ରାହ୍ମଣଙ୍କୁ ଅଧ-
ସ୍ମୃତ ଭୋଜନ ଦେଲେ,
ହର-ବଇର ବିକାର ମହାଚଣ୍ଡୀ
ମହାଚାପକୁ ଖଣ୍ଡିଲେ ।
ହଂସଗମନୀ ବସିଥିଲା ସଖୀକୁ
ବନ୍ଧ ବିସ୍ମରଣ କଲେ,
ହେମବରଣୀ ପୁରୁଷ ବର ବେଶ
ବସ୍ତ୍ର ତାଙ୍କୁ ଶାଢ଼ି ଦେଲେ । ୩୩ ।

କ୍ଷୀଣ ଉଦରୀ ✕ ✕ ✕ ମହାକ୍ଷ
ଏ ପାଠ ଦକ୍ଷିଣା କଲେ,
କ୍ଷମ୍ଭ ହୋଇଲା ସବୁ ମନ ସନ୍ତାପ
ଆନନ୍ଦ ହୋଇ ରହିଲେ ।
କ୍ଷମାଶୀଳ ଜଗ- ନ୍ନାଥ ପାଦ ସେବି
ବିଷ୍ଣୁଦାସ ରସ ଭଣେ,
କ୍ଷମେ ଚଉତିଶା ସଂପୂର୍ଣ୍ଣ ହୋଇଲା
ଦୁଖ ହିଁ ସୁଖ କାରଣେ । ୩୪ ।

ଲେଖକ : ଭଗବାନ

## ଯୋଗୀନ୍ଦ୍ର ଦାଣ୍ଡଧୂଆ

କହଇ ଯୋଗୀନ୍ଦ୍ର ଉତ୍ତମ ଭାବ ବନ୍ଧ
ଉଲଟ ତରୁମୂଳେ ସଦାନନ୍ଦ କନ୍ଦ
ଉଲଟ ତରୁମୂଳେ ତ୍ରିବେଣୀର ଧାର
ସତ୍ତ୍ୱ ରଜ ତମ ଏ ତିନି ପ୍ରକାର
ଉଜାଣି କମଳ ଉପରକୁ କର
କେଶରେ ମୁଦ୍ରିତ ଯେ ହୋଇଲା ଭ୍ରମର
କେଶରେ ମୁଦ୍ରିତ ହୋଇଲାକ ଯେବେ
ମୁଖ୍ୟଦେବତା ହୋ ଯୋଗୀନ୍ଦ୍ର,
କି କରିପାରେ ତେବେ ହେ ।୧।

ଖଣ୍ଡ ଖଣ୍ଡ କରି ଯେ ପକାଉଛୁ ବାରି
କୀଟ ବ୍ରହ୍ମ ପରିଯନ୍ତେ ସକଳ ଘଟେ ପୁରି
ନବଧା ଭଗତି ନ ଜାଣନ୍ତି କେହୁ
ଲହରି ଜଳେ ବଜେ ଜ୍ୟୋତିସ୍ୱନନ୍ଦଦେହୀ
ବାସନା ଥିଲାକୁ ଏ ଦେହ ରହିଛି
ହରିନାମ ସ୍ମରି ଯେ ବାସନା ହରୁଛି
ହଜିଲା ବାସନା କଲା ସବ କିଏ
ଚତୁର୍ଦ୍ଧା ମୂରତି ହୋ ଯୋଗୀନ୍ଦ୍ର,
ସେଠାରୁ ଉଦୟେ ହେ ।୨।

ଗଗନ ଶିଖରେ ଗୋଲହାଟ ଘରେ
ଗହଗହ ଧୂନି ଯେ ଶୁଭଇ ନିରନ୍ତରେ
ଧୂନିକି ଜଗି ଯୋଗୀ ମୂର୍ଚ୍ଛୁନି ଜାଗି
ଚଞ୍ଚଳ ନୟନକୁ ବ୍ରହ୍ମରନ୍ଧ୍ରେ ରଖି
ମନମତ୍ତ ହସ୍ତୀକି ଆଙ୍କୁଶ ଜ୍ଞାନ କରି
କାଉଁରିମଣ୍ଡଳକୁ ଅଛଇ ଆବୋରି
ଚଇତନ ହ୍ରାଷ୍ଟିକି ଜଗାଇ ପାହାରି
ପିଣ୍ଡ ଜଗାଇଛୁ ଯୋଗୀନ୍ଦ୍ର,
ବ୍ରହ୍ମାଣ୍ଡେ ଆବୋରି ହୋ ।୩।

ଘନଘନ ବଂଶୀ ଯେ ବଜାନ୍ତ ନରହର
 ଅଶେଷ ବ୍ରହ୍ମାଣ୍ଡ ଗର୍ଭେ ଅଛୁ ପୂର
ସେହି ବଂଶୀଧ୍ୱନି ଶୁଣିଣ ରାଧିକା
 ଚନ୍ଦ୍ରଶାଳାପୁରେ ଶୋଇଥିଲେ ଏକା
ଚନ୍ଦ୍ରଶାଳାପୁର ରତ୍ନ ବେଦୀ କହି
 ଚଉପାଶେ ସ୍ୱାରି ପ୍ରାଙ୍ଗଣ ଅଟଇ
ମଦନ ଆରତେ ଗୋପୀ ଏକାନ୍ତର
 ଶୁଣାଅ ବଂଶୀଧ୍ୱନି ହୋ ଯୋଗୀନ୍ଦ୍ର,
 ଆପଣା ନିଜ ପର ଯେ । ୪ ।

ଉଆଁସ ନିଶିରେ ଉଇଁଛି ଚନ୍ଦ୍ରମା
 ଉଇଁଛି ଦିବାନିଶି ସ୍ଥିର କରି ଅନା
ଉଇଁଛି ଦିବାନିଶି ନୟନେ ଦେଖି ରହି
 ଉଆଁସ ଦିନ ସ୍ୱନ୍ଦ ପାଇବୁ ତୁ କାହିଁ
ଚତୁଃପାଖୁଡ଼ା ଯୋଗୀ ଗଗନେ ଜଗାଇ
 କାମେଶ୍ୱର ଚକ୍ରେ ତୁ ନିର୍ଭର ହୋଇ
ଫାଟିଲା ତିମିର ଉଦେ ହେଲେ ଭାନୁ
 ଟଳପଡ଼ରୁ ହୋ ଯୋଗୀନ୍ଦ୍ର,
 କୋଟିଏ କୋଟି ମନୁ ହୋ । ୫ ।

ଚଞ୍ଚଳ ମନକୁ ନିଶ୍ଚଳ କରି ରଖ
 ଚତୁର୍ବେଦ ମୁଖେ ବଜାସ୍ୱେ ପଦ୍ମମୁଖ
କମଠ ଦୁଧ ଯୋଗୀ ସ୍ୱଲୁଣି ଧେନ ଦୁହିଁ
 ସେ ଦୁଧ ଖାଇ ଯୋଗୀ ଅମର ଅଛି ହୋଇ
ସ୍ୱରବେଦେ ଯୋଗୀ ହୋଇଥିଲା ଧନ୍ଦ
 ଦେଖ ହୃଦସ୍ଥରେ ସହସ୍ରକଳ ,ବନ୍ଦୀ
ବିଶ୍ୱକର୍ମା ସହସ୍ର ନଳଗଇ ଯନ୍ତ୍ର
 କାହିଁ ଜନମିଲୁ ହୋ ଯୋଗୀନ୍ଦ୍ର,
 କହିବୁ ବୁଝାଇ ହୋ । ୬ ।

କ୍ଷୀରସିନ୍ଧୁ ମଧ୍ୟରେ ସୁସ୍ୱାଦ ଜଳ ଭକ୍ଷ
 ଛଡ଼ ଅଇର ମୂଳେ ରହିଛି ପଦ୍ମମୁଖ
ଗୁଡ଼ ତୁ ଛଇଳ ଛଦ୍ରବୁଦ୍ଧି କଥା
 ଛଡ଼ଚକ ଭେଦ ରହିଛି ପଞ୍ଚ ମୁଥା

ନବଦ୍ୱାର ଭେଦ ଉଲଟ ପ୍ରକାର
ଛନ୍ଦଅଛୁ ଦେଖ ଚୌଦନ ଅକ୍ଷର
ଛଛନ୍ଦେ ଦେଖିବୁ ଜ୍ଞାନଚକ୍ଷୁ ଦ୍ୱାରେ
ଛଛନ୍ଦେ ଜଗାଅ ହେ ଯୋଗୀନ୍ଦ୍ର,
ବଙ୍କନାଳ ଦ୍ୱାରେ ଯେ । ୭ ।

ଯେତେବେଳେ ଜୀବ ପରମ ଭେଟହେବ
ବଶାଶତ ଆଙ୍ଗ ଳ ପବନ ବନ୍ଧବ
ହୋଦଶ ଦଣ ସନ୍ଧ ଭୂଲତା ମଧ୍ୟରେ
ବିଷ୍ଣୁକୃଟ ମାୟା ଯେ ରଅନା ସେହିଠାରେ
ଜୀବ ପରମ ସେଠାରେ ରସ ଯୋଗ ହୋଇ
ସମସ୍ତ ଦେଖି ଦ୍ୱାର କବାଟ ଫିଟାଇ
ଯୋଗବଳେ ଯୋଗୀ ବସିଥିଲୁ ଜାଗି
ହଜାଇଲୁ ଚେତନା ହେ ଯୋଗୀନ୍ଦ୍ର,
ହଂସ ଚରଣ ଲାଗି ଯେ । ୮ ।

ଝରଝର ହୋଇ ଯେ ବହଇ ଯମୁନା
ଝମିଟକେ ଝରମୁଣ୍ଡେ ରହ କନା
ଗଙ୍ଗା ଯମୁନା ଯେ ସରସ୍ୱତୀ ନଈ
ଏ ଢନଧାର ହଂସ ଚରଣ୍ଡି ଝରଇ
କାଳନ୍ଦୀ ଯମୁନା ସଙ୍ଗତେ ପୂଲନ
ତରୁ ସୃଷ୍ଟି ବୃକ୍ଷ ପଲ୍ଲବଲେ ବନ
ହେଞ୍ଜାକା ଛୁଣ୍ଡାଇ ଯୋଗୀ ଝରମୁଣ୍ଡେ ଥିଲୁ
ଝଟକ ବଜୁଲି ପ୍ରାଏ ହେ ଯୋଗୀନ୍ଦ୍ର,
ଝିମଣ୍ଡେ ପାରହେଲୁ ହୋ । ୯ ।

ନଗମ ଭୂମିକ ଯେବେ ଗମିପାରୁ
ନଗମେ ହଂସ ପାଣି ଖାଇବ ସରୋବରୁ
ନଗମ ସ୍ଥାନେ ହଂସ କରଅଛୁ ବାସ
ପାଦରୁ ଝରୁଅଛୁ ଅମୃତ ସୁଧାରସ
ଏ ରସ କପାଇଁ ଉପେକ୍ଷୁ ମୂଢ଼ପଣେ
ଏ ଜନ୍ମ ଚୋହର ଗଲାଟି ଅକାରଣେ

ଅକାରଣ ହୋଇଲୁ କାରଣ ଦେହ ପାଇ
ରଜନୀ ହୋଇଲେ ହୋ ଯୋଗୀନ୍ଦ୍ର,
ଉହ୍ନରୁ ରୁ କାହିଁ ହୋ । ୧୦ ।

ଟଳଟଳ ବନ୍ଧ ଟିକାଏ ନ ରହିବ
ଟମାଲେ ଟଳଲେ ସ୍ଥିର ଯେନମିବ
ଟିକାକ ସବକୁ ରୁ ରୁଟାଇ ରହୁ କନା
ଉଡ଼ଇ ବଙ୍କନାଳେ ଅବଧୂତ ବାନା
ଟେକ ବ୍ରହ୍ମରନ୍ଧ୍ରେ କବାଟ ଦେଲ ଫେଡ଼ି
ଭ୍ରମର ଗୁମ୍ଫାରେ କପାଳୀ ଆସନ ଫେଡ଼ି
ଟେକଟାକ ଯୋଗୀ କରସ୍ଥାନେ ଥିଲ
ଟିକାକ ସବକୁ ହୋ ଯୋଗୀନ୍ଦ୍ର,
ରଜନୀ ପାହିଲା ହୋ । ୧୧ ।

ଠୂଲ ଶୂନ୍ୟ ବୋଲି ଜଗତେ ଅଛୁ କହି
ଠୂଳଶୂନ୍ୟ ବୋଲି ଠାବ କଲୁ ନାହିଁ
ଠୂଲଶୂନ୍ୟ ପରେ ଶିଶୁବେଦ ଅଛୁ
ଶବଦ ନାମେନାଦ ଗୋଟିଏ ପୂରୁଛୁ
ଅନାହତ ଶବ୍ଦ ଯେଠାରୁ ସ୍ଫୁରଇ
ଯୋଗୀନ୍ଦ୍ର ଅଙ୍ଗରେ ସେ ନାଦ ଖେଳେ ଯାଇ
ସେହି ନାଦ ଲାଗି ଈଶ୍ୱର ହେଲେ ବାଇ
ବୋଲେ ଭଗବାନ ହୋ ଯୋଗୀନ୍ଦ୍ର,
ସେ ସ୍ଥାନେ ରହ ଯାଇ ସେ । ୧୨ ।

ଡେଙ୍ଗା ଜଗଡରେ ଡଙ୍ଗର ବେନି ଜନ
ଡାକୁ-ହାକୁ-ଛନ୍ତି ଦୋମୁହାଁ ସର୍ପେଣ
ସେହି ନାଦ ଯେନ ଅନାହତ ଧୂନି
ଡରଲେ ଯୋଗୀନ୍ଦ୍ର ଡଙ୍ଗରକୁ ଯେନ
ଡକାଇତ ଦୂତ ଅଇଶ ସଙ୍ଗତର
ଡରଇ ଖାଉଛନ୍ତି ଡେଙ୍ଗା ଜଗଡର
ଡର ଛାଡ଼ି ଯେବେ ଡୋଳେ ଦେଲୁ ଦୃଷ୍ଟି
ଡୋଳାକୁ ବୁହାଅ ହୋ ଯୋଗୀନ୍ଦ୍ର,
ଦେଖ କନା ରୁହ ହୋ । ୧୩ ।

ଟଳହଳ ପଥ ଟାଳେ ହେଲୁ ବଣା
ଟାକ୍ରୁଣୀ ଫିଟିଅଛୁ ଟଳ କର ଅନା
ଟୁଲାଇ ପଡ଼ୁ ଅଛୁ ମୋହମାନ ବଳେ
ଟାଳେହେଁ ପଡ଼ିବୁ ଜଳନ୍ତା ଅନଳରେ
ଟୋକାଲୁ ଗରଳ ନଷ୍ଟେ ହେଲୁ ବାଇ
କଷମ ଅଙ୍ଗୁଳିକୁ ବାଟ ଫେଡ଼ ଯାଇ

× × ×

ଟଳ ସ୍ୱର୍ଗ କନା ହୋ ଯୋଗୀନ୍ଦ୍ର,
ଅବନା ଜପଇ ହୋ । ୧୪ ।

ଅଣେଶ ସରଳ ଆଣିମାକୁ ନାହିଁ
ଅଣିମାଦି ଅଷ୍ଟନିଧି ପାଇବୁ ରୂ କାହିଁ
ଊର୍ମି ଧୂର୍ମି ଜ୍ୟୋତ ଜ୍ୱାଳା କରିବୁ ଏକତ୍ର
ଦେଖିନ୍ତା ପୁରୁଷ ହୋଇବ ଚକିତ
ଚମକ ପଡ଼ିବ ସଂଜୀବନୀପୁର
ତାରକ ଉପରେ ବାଜଇ ଖୀରତୂର
ଶଶାଙ୍କ ଉପରେ ଶୃଙ୍ଗ ଟଳଟଳ ହୋଇ
ବନ୍ଧ୍ୟା ସୁତ ପ୍ରସବିବହୋ ଯୋଗୀନ୍ଦ୍ର,
ନୟନେ ଦେଖ ରହି ଯେ । ୧୫ ।

ତ୍ରିବେଣୀଧାର ରୁ ତଲ୍ଲେ କର ଅନା
ତନ ତନ୍ତୁଡ଼ ତଳେ ଯେ ଅଛନ୍ତି ଶିଶୁମୁନା
ତୃଣାକା ଲଗାଇ ସେ ସ୍ଥାନେ ରହି ଯାଇ
ଠାଠିକେ ଦେଖିବୁ ତ୍ରିଲୋକ ଗୋସାଇଁ
ମହାମନ୍ତ୍ର ସାଧି ଯୋଗ ଲକ୍ଷ୍ୟ କରି
ଗାଡ଼ି ଅଛୁ ଯନ୍ତ୍ର ଯେ ମହାମନ୍ତ୍ର କରି
ତପ ଜପ କର ଦେଉଅଛୁ ଜାଲ
ଦେଖ ଦେଖ ଆହୋ ଯୋଗୀନ୍ଦ୍ର,
ନ ଛୁଇଁବ କାଳୀ ରେ । ୧୬ ।

ଥିର ବୁଦ୍ଧି ରୁଦ୍ଧ କରିଥିବୁ ମନ
ଥୋଣ୍ଟ ଗଣ୍ଠି ଆଏ ଯେ ବୋହନେବେ ଧନ
ଥାଉ ରୁଦ୍ଧ ମନ ଅଜପାନନ୍ଦ ପାଶ
ଅଜପା ଜପ କର କାଟିବୁ କାଳପାଶ

ଦେଖନ୍ତାକୁ ଯେବେ ଦେଖୁଥିବୁ ରୂନ୍ଧ
ଦେଖିଲେ କାଳକୁ କଛୁ ଯେ ଶଙ୍କା ନାହିଁ
ସ୍ଥିତି ଉତ୍ପତ୍ତି ଯେ ପ୍ରଳୟ ଅଟେ ସେଇ
ଆଅ ତା ପାଦେ ସେବ ହୋ ଯୋଗୀନ୍ଦ୍ର,
ଆପେଟି କାଳ ସେନ୍ଧ ଯେ । ୧୭ ।

ଦମକାଇ କାଳନ୍ଦୀ ଉଜାଣି ବହୁଅଛୁ
ବାଇଶି ପାବଛରେ ନବାଣ ହୋଇଛୁ
ଅନ୍ନ ପ୍ରସାଦ ଯେ ବଡ଼ା ବଡ଼ା ହୋଇ
ନିତ୍ୟସ୍ୱ ଜଗିଅଛୁ ପରଷିଦେବା ପାଇଁ
ପାଇବୁ ପ୍ରସାଦ ପରମହଂସପୂର
ରେଚକ ପୂରକ କୁମ୍ଭକ ପ୍ରକାର
ଏ ଘଟ ଜାଚି ଯୋଗୀ ଯତନେ ସାଧଇ
ବହୁଛୁ ଯମୁନା ହୋ ଯୋଗୀନ୍ଦ୍ର,
ପଶ୍ଚିମକୁ ବହ୍ନ ଯେ । ୧୮ ।

ଧ୍ୱନକୁ ଜାଗେଜୁଗି ବସିଥିଲ ଧ୍ୟାନୀ
ଧ୍ୟାନବଳେ ଧବଳସ୍ବରକୁ ଦେଖଇ
ଧରଣୀମଣ୍ଡଳେ ହୋଇଲୁ ତୁ ଜାତ
ଧର୍ମକୁ ଅନାଇଁ କନ୍ଧୁ କ ନା ସତ
ଧର୍ମକୁ ଆଶ୍ରେ କଲେ ଶତଧନୁ କର
ଗୋସିଂହ ଦୈତ୍ୟକୁ ଅର୍ଜୁନ ବୀର ମାର
ବଳରାମ ପ୍ରଭୁଙ୍କୁ ସଂଗ୍ରାମେ ଜିଣିଲେ
ସୁଭଦ୍ରା ଦେବୀ କ ହୋ ଯୋଗୀନ୍ଦ୍ର,
ଅର୍ଜୁନକୁ ଦେଲେ ଯେ । ୧୯ ।

ନଗମବନେ ପଶି ନରାଣ କର୍ମା ହେଉ
ନଗମରୁ ଝର ଯେ ଗ୍ରାସୁଅଛୁ ରାହୁ
ନର୍ଝରରୁ ଝର ନରାଟ କର ଅନା
ନରଜତ ଘରେ ଜପଇ ଅବନା
ନରକତ ଘରେ ରକତ ଯନ୍ଧି ନାହିଁ
ଅଜାବ ମାର୍ଏସ ଯୋଗୀନ୍ଦ୍ର, ଭକ୍ଷଇ

ଖଷିଲର ପିଣ୍ଡ ଭୂଖଣ୍ଡ ହୋଇଥାଇ
ଟେକଭଦ୍ରା ତୀର୍ଥ ହୋ ଯୋଗୀନ୍ଦ୍ର,
ଯେଣ୍ଡ ମୋ ଭ୍ରାନ୍ତ ଥାଇ ଯେ । ୨୦ ।

ପରମପୁରୁଷ ସଙ୍ଗେ ପରଚେ ହୁଅ ଯାଇ
ପୁଣ୍ୟାର୍ଥୀ ପୂଜଲେ କପିଳାସେ ଥାଇ
ଜଗିରହ ଯୋଗୀ କପିଳାସ ଘାଟେ
ପବନ ଧରି ବେଗେ ଓଁଟାଶରୁ ଆଣ୍ଟେ
ଫିଟିଯିବ ଦେଖ ବିଷମ କଳଣୀ
ପଶ୍ଚିମ ଦିଗକୁ ବହିବ ଉଜାଣି
ନାମ ନର୍ମଲେ କାୟା ନର୍ମଲ ହେବ
ମାୟାବନ ସିନା ହୋ ଯୋଗୀନ୍ଦ୍ର,
ଅନଳେ ପୋଡ଼ିବ ଯେ । ୨୧ ।

ଫୁଲପଣତରେ ରୁ ବଞ୍ଚାଇଲୁ କାଳ
ଫୁଲ ଚୁମ୍ବି କେଶରେ ଯେ ରହିଛୁ ଭ୍ରମର
ଫୁଟିଲା ଫୁଲକୁ ରୁ କଢ଼ି ପ୍ରାପ୍ତେ କର
ତେବେ ପରମହଂସ ହୋଇବ ଭ୍ରମର
ଭ୍ରମରକୁ ଧ୍ୟାଇ ଯୋଗୀନ୍ଦ୍ର ରହିଲ
ରଜନୀକାଳେ ପୁଷ୍ପ ମୁଦ୍ରିତ ହୋଇଲା
ରଜନୀକାଳେ ପୁଷ୍ପ ମୁଦ୍ରିତ ହୁଏ ରହି
ତେବେ ସିନା ଭିତରେ ହୋ ଯୋଗୀନ୍ଦ୍ର,
ପାରୁଆ ପାଶୋରଇ ଯେ । ୨୨ ।

ବହୁଛି ତ୍ରିବେଣୀ ମେରୁ ଊର୍ଦ୍ଧ୍ୱ କରି
ମଧ୍ୟରେ ଦେଖୁଅଛି କପିଳାସ ଗିରି
ବଡ଼ ଦୁର୍ଗମ ପଥ ପଶିଲୁ ରୁ କାହିଁ
ତ୍ରିବେଣୀ ମେରୁଗିରି ପବନ ଅଛି ହୋଇ
ଫୁଙ୍କାରନ୍ତି ବାଟେ ଉଜାଣି ବହଇ
ମହାମାୟା ଘାଟ ଯୋଗୀରୂପ ହୋଇ
ଯୋଗକର ଲେଶ ହୋ ଯୋଗୀନ୍ଦ୍ର,
ବାନ୍ଧିଛି ସେଠାରେ ନେଇ ଯେ । ୨୩ ।

ଭଲ ଭଲ ଅଛୁ ପ୍ରଭୁ ନରହରି
ଭଲ ଜଗିଅଛୁ କାଳରୂପ ଧରି
ମୋହୁଅଛୁ ରୂପ କାଳ ମାୟା ହୋଇ
ରମ୍ଭମୁଣ୍ଡା ଖୋପରେ ପଡ଼ିବୁ ରୁ ଯାଇ
ରହୁଁ ରହୁଁ ରୁହ ରମ୍ଭମୁଣ୍ଡା ହୋଇଯିବୁ
ନିତ୍ୟାନନ୍ଦ ପ୍ରଭୁଙ୍କୁ ବା କାହୁଁ ରୁ ପାଇବୁ
ଚୈତନ୍ୟ ଦୁଆରେ ବସିଅଛୁ ଦେଖି
ବୋଲେ ଦୀନ ଭଗିଆ ହୋ ଯୋଗୀନ୍ଦ୍ର,
ଭଜ ରୁ ପଦ୍ମମୁଖ ହୋ । ୨୪ ।

ମହାମନ୍ତ୍ରମା ଯେ ମହାମନ୍ତ୍ର ଦେଖି
ଷୋଡ଼ଶ ଅକ୍ଷରେ ଯେ ଖଞ୍ଜିଅଛୁ ହଂସ
ବତିଶ ଅକ୍ଷରେ ରାଧାକୃଷ୍ଣ ବେନି
ରାମନାମ ଶବ୍ଦ ଡାକଇ ମୂର୍ଚ୍ଛନି
ରହିଥିଲ ଯୋଗୀ ସେ ଶବଦକୁ ଧ୍ୟାୟୀ
ବଙ୍କନାଳବାଟେ ନିତ୍ୟସ୍ଥଳୀକି ରୁନ୍ଧି
ମକାର ସକାର ଓଁକାର ଯେ ଘେନି
ସରିଲ ସକାର ହୋ ଯୋଗୀନ୍ଦ୍ର,
ଓଁକାରକୁ ଚହ୍ନି ଯେ । ୨୫ ।

ଯେତେବେଳେ ଦେହ ବିଦେହ ଥିଲ ହୋଇ
ଜନନୀ ଜଠରେ ଯେ ଜନମିଲୁ ଯାଇ
ମାତୃକା ହେତୁରେ ରାମନାମ ଧ୍ୱନି
ଭାସିଲ ହଂସ ତାହା ଅହର୍ନିଶି ଘେନି
କହନ୍ତା ବହନ୍ତା ଶୁଣନ୍ତା ସ୍ମୃତି ତନି
ବର୍ତ୍ତିଛନ୍ତି ରାମନାମ ହୃଦକୁ ଘେନି
ଭବଦ୍ୱାରୁ ଯେ ସୂତ ହୋଇଲୁ ରୁ ଜନ୍ମ
ହଜିଗଲ ତୋହର ହୋ ଯୋଗୀନ୍ଦ୍ର,
ଆପଣା ନିଜ ନାମ ହୋ । ୨୬ ।

ରାହାସ ନିତ୍ୟସ୍ଥଳୀ ଦେଖ କିନା ଯାଇ
ନିଜ ନାମ ତୋର ଯେ ସେଠାରେ ଅଛୁ ରହି
ବିଷମ କହି ଏବେ ଫେଡ଼ କରି ଅନା
ବିଷୟା-ବିଷଲଡ଼ୁ ବିଷ ଲେଡ଼ୁ ସିନା

ଅମୃତ-ଲଡ଼ୁ ଦେଖ ଭଲେ କରି ଗୁହ୍ନା
ଅନନ୍ତଫଣା ପରେ ବଜେ ଚଉବାହ୍ନା
ଶିଶୁବେଦପରେ ଅନନ୍ତ ଫଣା ଷୋଳ
ନିଜ ରାମନାମ ହୋ ଯୋଗୀନ୍ଦ୍ର,
ସେ ସ୍ଥାନରେ ମୂଳ ସେ । ୨୭ ।

ଲୋଭରେ ପଡ଼ି ମନ ନ କରୁ ତୁ ଲକ୍ଷ୍ୟେ
ଲହରି ମାରୁଅଛି ବେଗେ କରି ଅକ୍ଷେ
ଆଣୁ ଆଣି ଜଳେ କର୍ମ ବୁଡ଼ିମରୁ
ଆଣୁକରି ଡାକ କି ନା ମହିମା-ମହାମେରୁ
ଅଣ୍ଟି ଧନ ଯୋଗୀ ହଜାଇଲୁ କାହିଁ
ଅଣିମାଦି ଅଷ୍ଟନିଧି ପାଇବୁ ତୁ କାହିଁ
ଅଣିମାଦି ଅଷ୍ଟନିଧି ମୁକତିର ଦ୍ୱାର
ଅକ୍ଷରେ ଦେଖ ହୋ ଯୋଗୀନ୍ଦ୍ର,
ଅର୍ଦ୍ଧ ଯେ ମାତ୍ରା ପର ସେ । ୨୮ ।

ତଣା ହଉଅଛୁ ତୁ ବ୍ରହ୍ମରନ୍ଧ୍ର ବାଟ
ବିଷମ କଣ୍ଟି ଦେଖ ପଡ଼ିଛି କବାଟ
ତଣତଣ ନିରୋଧିବୁ ପଡ଼ୁ ସର୍ବଘାଟ
ଏଥିକି କର୍ମାଇ ହେଉ ଛଟପଟ
ରହନ୍ତି ଯେ ଯାହାରେ ନପାରନ୍ତି ଚଳି
କଣ୍ଟି ଫେଡ଼ି ଦେଖ ହୋ ଯୋଗୀନ୍ଦ୍ର,
ସେ ବନେ ହେବୁ ମେଳି ରେ । ୨୯ ।

ଶ୍ରୀବନ୍ତସ୍ୱରୂପ ନିତ୍ୟାନନ୍ଦ ହରି
ସେ ନୀଳକନ୍ଦରେ ଅଛନ୍ତି ବଜେ କରି
ରତ୍ନସିଂହାସନେ ଚତୁର୍ଦ୍ଧା ମୂରତି
ଜ୍ୟୋତି ବପୁକରି ବୈଦୁର୍ଯ୍ୟ କାନ୍ତି
ସେ ଜ୍ୟୋତି ପାରୁଣେ ଜ୍ୟୋତି ଏବେ ରହି
ଶିଶୁମୁନା ରନ୍ଧ୍ରେ ଗଳିଯିବୁ ତୁହି
ବ୍ରହ୍ମ ଗାୟତ୍ରୀ ପାବଛି ସେହି ଠାବ
ନୟନେ ଦେଖିବୁ ହୋ ଯୋଗୀନ୍ଦ୍ର,
ସଞ୍ଜୀବନୀପୁର ହୋ । ୩୦ ।

ସଜୀବ ଦେବତା ଆପେ ତୁ ନ ଜାଣ
କାଷ୍ଠ ପାଷାଣକୁ ଦେବତା ସଙ୍ଗେ ଗଣ
ସରସ ବସନ୍ତ ପ୍ରାପ୍ତେ ବନେ ପୁଷ୍ପ
ସହସ୍ର ଦଳ ମଧ୍ୟେ ବିହରୁଅଛି ହଂସ
ଶିରୁଳୀ ଖଣ୍ଡା ଦେଖ ସେଠାରେ ନିକଟ
ଶିଶୁମ୍ନା ପ୍ରମାଣେ ସେହିଠାରେ ବାଟ
ପିମ୍ପୁଡ଼ିବାଟେ ଯୋଗୀ ମତ୍ତଗଜ ଯାଇ
ସେଠାରେ ସେନାପତି ହୋ ଯୋଗୀନ୍ଦ୍ର,
ହୋଇଛି ମାଧୋଇ ଯେ । ୩୧ ।

ସରସ୍ୱତୀ ବୋଲି ଯେବଣ ନଦୀ କହି
ଇଅଁଳା, ପିଅଁଳା ମଧ୍ୟରୁ ଅଛି ବହି
ଇଅଁଳା ଭାଗୀରଥୀ ପିଅଁଳାଟି ଜୀବ
ସରସ୍ୱତୀ ନଦୀ ମଥାରେ ବହେ ଶିବ
ପଞ୍ଚ ଅକ୍ଷରେ ଜପି ସେ ସ୍ଥାନେ ପଶିବୁ
ଡମ୍ବୁରୁ ଧ୍ୱନିନାଦ ହୋ ଯୋଗୀନ୍ଦ୍ର,
ଯୋଗବଳେ ଦେଖିବୁ ହୋ । ୩୨ ।

ହାଟେକ ବସିଅଛି ଶୂନ୍ୟପରେ ଦେଖ
ହାଲହୁଲ ପଡ଼ିଅଛି ତିନିଯସ୍ୱୀଲୋକ
ହାଟ ଭାଜ ଦେଖ ବସିବ ବଜାର
ଜୀବ ଅଛି ଜୀବ ଯେ ଏକାକାର
ଅଜୀବ ଜୀବ ଯେବେ ପାରୁ ଏକ କରି
ଯମ କସ କରିପାରେ ହୋ ଯୋଗୀନ୍ଦ୍ର,
ବାନ୍ଧିବୁ ତାକୁ ଧରି ଯେ । ୩୩ ।

କ୍ଷୀରସିନ୍ଧୁ ମଧ୍ୟେ ଦେଖ ଅଛି ରହି
ଛିଦ୍ର ନୁହଇଁ ଅଛିଦ୍ର ସର୍ବଭୂତେ ସେହି
ଛାମୁରେ ଉଭା ହୋଇ ବନିତାନନ୍ଦନ
ରମ୍ୟକ ଦ୍ୱୀପ ବୋଲି ସେ ସ୍ଥାନର ନାମ
ରାଧାକୁଣ୍ଡ ତହିଁ ଦକ୍ଷିଣ ପାରୁଶେ
ସ୍ନାହାନ କଲେ ତହିଁ ସ୍ତ୍ରି ସ୍ୱାଅଙ୍ଗ ଦଣେ
ସେହି କୁଣ୍ଡେ ସ୍ନାହାନ କଲକ ଭୂଷଣ୍ଡ
ବୋଲେ ଭଗବାନ ହୋ ଯୋଗୀନ୍ଦ୍ର,
ରହିଲି ତାର ପିଣ୍ଡ ହୋ । ୩୪ ।

ଲେଖକ : ଭୁବନେଶ୍ୱର

## ଭବାନୀ ଚଉତିଶା

( ରାଗ—ଚନ୍ଦ୍ରା-ଭୈରବୀ—ଇଚ୍ଛାବତୀ ବାଣୀ )

କୃପାମୟୀ ବଦନକୁ ଚାହିଁ
କୃପା କର ପାମର ଜଣାଇଁ,
କୃପାଣଧାରଣୀ କଷ୍ଟ-ବିମୋଚନୀ
କୃପା ଘାନଜନେ ହେଉନାହିଁ, ଗୋ ଭବାନୀ । ୧ ।

ଖଣ୍ଡପରଶୁଧର (୧) ସୁନ୍ଦରୀ
ଖଣ୍ଡ ଘୋର ଆରତ ମୋହର,
ଖଣ୍ଡନ କର ତାତମାତ ସଂଗୋଧ
ଖିତି ମଧ୍ୟେ ହୋଇଲି ଭିଖାରୀ, ଗୋ ଭବାନୀ । ୨ ।

ଗିରିରାଜନନ୍ଦନୀ କଲ୍ୟାଣୀ
ଗୀରବାଣ (୨) ସ୍ତୁତି ଦ୍ୱବେ ଘେନ,
ଗରୀଶ (୩) ରମଣୀ କେଶରୀବାହିନୀ
ହୋଇ ହେଲେ ଦନୁଜନାଶିନୀ, ଗୋ ଭବାନୀ । ୩ ।

ଘନ କଜ୍ଜ୍ୱଳବରନା କାଳୀ
ଘନ ଦୁଃଖ ଦେଉଅଛୁ ଦଳି,
ଘନକୁ ଚାତକ ଆଶା କଲା ପରି
ଚାହିଁ ନ ପାରଇ ଆନେ ବଳି, ଗୋ ଭବାନୀ । ୪ ।

ଓଁକାରରେ ଅର୍ଦ୍ଧମାତ୍ରା ଘେନ
ଉଚାରଇ ଭିଆସ ରଜନୀ,
ଊର୍ମିଧୂମି କ୍ୟୋତି ହୃଦସ୍ଥକୁ ଚନ୍ଦ୍ର
ଘୁଞ୍ଚୁ ନାହିଁ ପାପତାପ ଘନ, ଗୋ ଭବାନୀ । ୫ ।

---

(୧) ଖଣ୍ଡପରଶୁଧର—ଶିବ । (୨) ଗୀରବାଣ ( ଗୀର୍ବାଣ )—ଦେବତା । (୩) ଗିରୀଶ—ମହାଦେବ ।

ଚତୁର୍ବର୍ଗଦାୟିନୀ ଅଭୟା
ଚତୁର୍ଦ୍ଦଶ ଲୋକରେ ତୋ ଦୟା,
ଚତୁର୍ବର୍ଗ ଦେଇପାରୁ ଅବହେଳେ
ହୀନ ପାମରଠାରେ ନିର୍ଦ୍ଦୟା, ଗୋ ଭବାନୀ । ୬ ।

ଛଡ଼ଚକ୍ର ଭେଦ ଯୋଗୀମାନ
ଛଡ଼ିଭୁଜେ ମୋ ଦୁଃଖ ନିଧନ,
ଛଡ଼ଆନନ (୧) ଜନନୀ ସ୍ତବ ଘେନ
ଯଶ ପ୍ରକାଶ ତିନ ଭୁବନ, ଗୋ ଭବାନୀ । ୭ ।

ଜୟ ଅମ୍ବିକା ଭଦ୍ରକାଳିକା
ଜୟ ମଙ୍ଗଳା ନବଚଣ୍ଡିକା,
ଜୟ ଚଣ୍ଡୋମୁଣ୍ଡାଚଣ୍ଡ-ବିଦାରିଣୀ
ଜୟ ଭଗବତୀ ଶ୍ରୀ ଚର୍ଚ୍ଚିକା, ଗୋ ଭବାନୀ । ୮ ।

ଝାଡ଼ପତ୍ର ପଢ଼ି ତବ ନାମ
ଝାଡ଼ ମଧ୍ୟେ କରୁଥିଲେ ଗାନ,
ଝାଡ଼ ଗ୍ରୀଷ୍ମରେ ଦହନ ଯେସନ
ଦୁଃଖବନ ହୁଅଇ ତେସନ, ଗୋ ଭବାନୀ । ୯ ।

ଅନାବୃଷ୍ଟିରେ ରଖିଛୁ ମହୀ
ଅନ୍ନ କରୁଣାରେ ଶିବସହୀ,
ଅନଶନରେ ମୋ ଦିନ ଯାଉଅଛୁ
ଅନ୍ନପୂର୍ଣ୍ଣା ନାମ ଧ୍ୟାୟି ଧ୍ୟାୟି, ଗୋ ଭବାନୀ । ୧୦ ।

ଟଳଟଳ ନ କର ମୋ ମନ
ଟଳଇ ନାହିଁ ଦୁର୍ଦ୍ଦଶାମାନ,
ଟଳଇ ଜଗତପ୍ରାଣ (୨) ଘାତେ ତରୁ-
ବର ପରି ମୋର ଅପଘନ, ଗୋ ଭବାନୀ । ୧୧ ।

ଠୁଲଶୂନ୍ୟରୂପୀ ଜଗଦ୍ଧାତ୍ରୀ
ଠୁଳକରି ପଞ୍ଚତତ୍ତ୍ୱେ ଚିନ୍ତ୍ୟ,
ଠୁଳହୋଇ ଦୁଃଖ ହେଉଛୁ ବିମୁଖ
ଭୃତ୍ୟ ଭୁବନେଶ୍ୱରଙ୍କୁ ନିତ, ଗୋ ଭବାନୀ ।୧୨।

---

(୧) ଛଡ଼ଆନନ—କାର୍ତ୍ତିକେୟ । (୨) ଜଗତପ୍ରାଣ—ପବନ ।

ଡାକଦେଲେ ଭୃତ୍ୟଜନ ଆଗେ
ଡାକ ଶୁଣୁନାହିଁ ଶ୍ରୁତିଯୁଗେ,
ଡାକ ନାଶ ଚକ୍ରବର୍ତ୍ତୀ ଖ୍ୟାତ ମତ
ସେହିମତ ଲଭେ ହୃଦ ବେଗେ, ଗୋ ଭବାନୀ ।୧୩।

ଢକାପଣରେ କଲ ଯା ସ୍ତୁତ
ଢମ ନମଶିବ ଭଗବନ୍ତ,
ଢମପଣେ ଗାଳିଦେଲେ ନିଜ ସୁତ
ଜନନୀଙ୍କ ମନେ କ୍ରୋଧ ଚନ୍ତ୍ର, ଗୋ ଭବାନୀ ।୧୪।

ଣୀର ପଲ୍ଲବ ଅସନ କରି
ଣିରନ୍ତରେ ମାର୍କଣ୍ଡେୟ ସ୍ମରି,
ଣୀରଜନସ୍ୱାମୀ-ପଥ ଭୃତ୍ୟ ମାନ
ଅଲ୍ପ ଦସ୍ତାରେ କଲ୍ୟାଣୁ ବରି, ଗୋ ଭବାନୀ ।୧୫।

ତ୍ରିତାପ ବର୍ଣ୍ଣିତ ବର୍ଗର
ତ୍ରିତାପ କୋଣେ ଲଙ୍ଘ ଆଗର,
ତ୍ରିତାପ ମାୟା ଖଣ୍ଡି ମୁକ୍ତି ଲଭିଲ
ପୁଣ୍ୟବନ୍ତ ସାଧନ ସଙ୍ଗର, ଗୋ ଭବାନୀ । ୧୬ ।

ଥିଲ ଉଦରେ ମାତ ବ୍ରହ୍ମାଣୀ
ଥିଲ କମଣ୍ଡଳୁ ସିଞ୍ଚି ପାଣି,
ଥିଲ ରଣସ୍ଥଳେ ଯେତେକ ଦନୁଜ
ତାଙ୍କୁ ସମର୍ପିଲ କାଳପାଣି, ଗୋ ଭବାନୀ । ୧୭ ।

ଦର (୧) ଚକ୍ର ତ୍ରିଶୂଳଧାରିଣୀ
ଦର ହୃଦରେ ଦବା ଚଜନୀ,
ଦଉ ଦରଶନ କରି ନ ପାରଇ
କ୍ଷମାସାଗରୀ କୃପାନିଧାନୀ, ଗୋ ଭବାନୀ । ୧୮ ।

ଧବଳଗିରି ଶିଖରବାସୀ
ଧବଶବ ହୋଇଲେ ପଦେ ବସି,
ଧବଳାଙ୍ଗୀ ମାତ ସିନ୍ଦୂରେ ମଣ୍ଡିତ
ସେ ପଦକୁ ଭଜେ ଅହର୍ନିଶି, ଗୋ ଭବାନୀ । ୧୯ ।

---

(୧). ଦର—ଶଙ୍ଖ, ଭୟ ।

ନଗପତି ଗହ୍ୱରୀ କିଶୋରୀ
ନଟଳ ଦିନେ ଦୁଃଖ ମୋହରି,
ନଗର ଜନ ମଧ୍ୟେ ମୁଁ ମାନହୀନ
ହୋଇ ରହୁଛି ତୋ ନାମ ଧରି, ଗୋ ଭବାନୀ ।୧୦।

ପରବ ସନ୍ଧିକାଳେ ପୂଜଇ
ପରମେଶ୍ୱରୀ ତୋ ପଦ ଧ୍ୟାୟି,
ପର ପର୍ବ କରିଲୁ ମାତା ହୋଇ
ପଞ୍ଚପୀଠେ ପରି ଜୀବଧାୟୀ, ଗୋ ଭବାନୀ । ୧୧ ।

ଫଳ ନଫଳୁ ଅଙ୍ଗନା ଆଣି
ଫଳସିଦ୍ଧି ଅର୍ଥେ ବାମେ ଘେନି,
ଫଳରେ ଶ୍ରୀପୁଷ୍ପ ପତ୍ର ନାନା ଫୁଲ
ମଣ୍ଡି ଦେଇ ଭଜିଲି ରଜନୀ, ଗୋ ଭବାନୀ ।୧୨।

ବେନି ଦୁଗୁଣ ଶକ୍ତି ପୀଠରେ
ବେନି ରଜନୀ ରହି ନିଷ୍ଠାରେ,
ବେନି ଜାନୁରେ ବେନି ପାଣି ଦେଇଣ
ଲମ୍ବ କରି ସାଧିଲି କଷ୍ଟରେ, ଗୋ ଭବାନୀ । ୧୩ ।

ଭୁବନେଶ୍ୱର କ୍ଷେତ୍ର ପୀଠରେ
ଭୁବନେଶ୍ୱରୀ ମନ୍ତ୍ର ନିଷ୍ଠାରେ,
ଭୁବନେଶ୍ୱର ପୁରଶ୍ଚରଣ କରି
କ୍ଷପିଗଲା ଯା ଭବକଷ୍ଟରେ, ଗୋ ଭବାନୀ । ୧୪ ।

ମଧୁକୈଟଭ ନାମେ ଅସୁର
ମଧୁମଦେ ଲୁଟି ସୁରପୁର,
ମଧୁସୂଦନ ନୟନରୁ ଅନ୍ତର
ହୋଇ ରଖିଲୁ ହେଲେ ନିସ୍ତର, ଗୋ ଭବାନୀ । ୧୫ ।

ଶିବ ଜୀବନ ଘଟୁ ବାହାରି
× ×
× ×
ମାଗୁଅଛି ଦୀନଶିବ ପଦ୍ମପାଦ ସ୍ମରି, ଗୋ ଭବାନୀ । ୧୬ ।

ରକ୍ତବୀର୍ଯ୍ୟ ଶୂର ନାଶି ହେଲେ

× × ×

× × ×

ଦେଇଶିର ପରିବାର ହେଲେ ପୁରକୁଲେ, ଗୋ ଭବାନୀ ।୨୭।

× × ×

ଲବକରେ ବୋଲ ଯେଉଁ ପଦ

× ସେ ପଦକୁ ଦିଅ ମୋ ଶିରସି, ଗୋ ଭବାନୀ ।୨୮।

× × ×

ବାମଦେବଙ୍କ ସ୍ଥାନରେ ତୋଷି

ବାମକରେ ଶ୍ରୀ ବଗଳାମନ୍ତ୍ର ଘୋଷି

× × ×

ସଂଶୟକୁ ଦେଲି ଦୂର କରି

ଶାକମ୍ଭରୀରୂପେ ମାହେଶ୍ୱରୀ,

ଶାକ ଭୁଞ୍ଜାଇ ପ୍ରାଣୀଙ୍କ ତାରି

× × ଅଟେ ମୋହରି, ଗୋ ଭବାନୀ ।୩୧।

× × ×

କ୍ଷମ ନୋହେ କହିବାକୁ ଦାସ

କ୍ଷମାନିଧାନୀ ଖଣ୍ଡ ମୋ ଦୋଷ,

କ୍ଷେମ (୧) ପ୍ରଦ ଶ୍ରୀପଦ ସାରସ (୨) ରସ

ଭୃତ୍ୟ ଭୁବନେଶ୍ୱରୀ ଅଂଶ, ଗୋ ଭବାନୀ ।୩୪।

---

ଲେଖକ : ରଘୁନାଥରାଜ ହରିଚନ୍ଦନ ( ବାଣପୁର ଅଧିପ )

## ଚନ୍ଦ୍ରମୁଖୀ ଚଉତିଶା

(ରାଗ—ଦକ୍ଷିଣ କାମୋଦୀ)

କମଳଦଳନେତ୍ରୀ କଥରେ ବସି କାନ୍ତ

କହଇ କୋମଳତା କରି

କଳାକରବଦନୀ କଳକଣ୍ଠବଚନୀ

କନକ ପ୍ରତିମା ଗହ୍ୱରେ, ଚନ୍ଦ୍ରମୁଖୀ !

---

(୧) କ୍ଷେମ—ଶୁଭ, ମଙ୍ଗଳ । (୨) ସାରସ—ପଦ୍ମ ।

କହୁଁ ପାଦ ଧରି ତୋ'ତେ
କହ ସତ୍ୟ ବଚନ ମୋତେ
କେମନ୍ତ ହୋଇ କାଲି ଦିନ ସରିବ ମୋର
ତୁ ଯେବେ ନଥିବୁ ସଙ୍ଗତେ ରେ । ୧ ।

ଖିନଉଦରୀ ଖଞ୍ଜ- ରିଟ ନୟନ ଅନ୍ତେ
ଖେଳାଉ ଦରହାସ ହୋଇ
ଖଣ୍ଡିଏ ଦୂରେ ଥାଇ ଖେଦ-ନେଣେ ଚାହିଁବା
ପୁଣି ପାଇବା ଅବା କାହିଁ ରେ, ଚନ୍ଦ୍ରମୁଖୀ !
ଖଣ୍ଡି ବିଧାତା ଏତେ ସୁଖ
ଝଟାଇବ ବିଷମ ଦୁଃଖ,
କ୍ଷଣ-କ୍ଷଣକେ ମୋର ଆନନ୍ଦ କେ କହିବ
ଅନାଉଥିଲେ ଚନ୍ଦ୍ରମୁଖ ରେ । ୨ ।

ଗୁଣ ଗୁଣି ଗୁପତ- କ୍ରୀଡ଼ା ସୁରସମାନ
ଗୁଣି ସନ୍ତୋଷ ନୋହେ ମନ,
ଗଜଗମନୀ ଗଜ- ଗମନ ଅନାଇଲେ
ସନ୍ତୋଷ ଲୁହଇ ନୟନ ରେ, ଚନ୍ଦ୍ରମୁଖୀ !
ଗୁରୁ ସଘନ ବେନି କୁଚ
ଗିରି ସମାନେ ଦିଶେ ଉଚ,
ଗଢ଼ିବାକୁ ତ କୁଚ- କଣ୍ଠକୁମ୍ଭ, କନକ-
କଳସ ବିଧି କଲା ସଞ୍ଚ (୧) ରେ । ୩ ।

ଘନଜଘନୀ ହଠ କୁଚରେ କର ଦେଇ
ମନରେ ଏମନ୍ତ ବିଚାର
ଘଟଣ୍ମୁଖୀ ମୋର ଜୀବନ ଥିବାଯାଏ
କ୍ଷଣେହେଁ ନୋହିବୁ ଅନ୍ତର ରେ, ଚନ୍ଦ୍ରମୁଖୀ !
ଘଟ କରିବ ତାହା ବିହି
ଘଡ଼ିଏ ବଞ୍ଚିବ ନ ଚାହିଁ,
ଘେନିବ ପ୍ରାଣ ମୋର ଘନ କୁସୁମଶର (୨)
ଘଟଣ ନୟନ ନ ଚାହିଁ ରେ । ୪ ।

---

(୧) ସଞ୍ଚ—ସୁନ୍ଦର । (୨) କୁସୁମଶର—କନ୍ଦର୍ପ ।

ଙୀରଜନୟନୀ ରେ ଙଣ୍ଡସ୍ତେଁ କରୁଅଛୁ
ଙବଢ଼ ଆଲିଙ୍ଗନ ତୋର
ଙମିଷେ ନ ପାଇଲେ ନ ରହଇ ଜୀବନ
ନୁହଇ ଆନ ଏ ଉତ୍ତର, ରେ ଚନ୍ଦ୍ରମୁଖୀ !
ନଳୀନନେତ୍ରୀ କୁନ୍ଦଦନ୍ତୀ
ଙଣ୍ଡେ ମୋ ନୟନସମ୍ପତ୍ତି,
ନୟନ ପିଞ୍ଜୁଡ଼ିବା ଲକ୍ଷ ଯୁଗ ମଣେ
ସରବ ତୋର ବନୁ ଗୁଢ଼ ରେ । ୫ ।

ଚାରୁ ଚନ୍ଦ୍ରମାମୁଖୀ ଚତୁର କରଗତେ
ଦଣ୍ଡେ କରଇ ଯେବେ ଆଣି
ଚନ୍ଦ୍ରଶେଖର ଚନ୍ଦ୍ର ବୋଲଇ ମହାପ୍ରଭୁ
ପବିତ୍ର କଲୁ ମୋର ପାଣି ରେ, ଚନ୍ଦ୍ରମୁଖୀ !
ଚରଣ ମୋ ଧରଣ ନ ଯାଇ
ଚୁଣ୍ଡେ ଯେ ଚୁମ୍ବନ ଦଅଇ,
ଚୁମ୍ବି-ଚୁମ୍ବିଣ ସୁଖ ଚଣ୍ଡିବ କେଉଁ ବନ୍ଧୁ
କାହାକୁ କେଉଁଠାକୁ ନେଇ ରେ । ୬ ।

ଛୁଞ୍ଚ ରେ କ୍ଷୀରୋଦଜା ତୁ ମୋ ପଦ ସେବକକୁ
ସରବ ତୋର ଧନମାନ,
ଛିଦ୍ରମଣ୍ଡଳୀ ମୋର ଦୁଃଖ ଦେଖି ଅସ୍ଥିର
ହେଉ ଯେ ଯେତେଣ ବମନ ରେ, ଚନ୍ଦ୍ରମୁଖୀ !
ଛଟକ ହସି ତୋ କହିବା
ଛିଦ୍ରମଣ୍ଡଳେ କି ପାଇବା,
ଛଡ଼ାଇ ମନବ୍ୟଥା କହୁ ଯେ ସ୍ନେହକଥା
ସୁମରି ସୁମରି ମରିବା ରେ । ୭ ।

ଜାଣ ମଣିରତନ ଯାମିନୀଯାକ ବସି
ଜାଗର ଯୋଗେ କରି ନେଇ
ଜନମ ଜନ୍ମାନ୍ତର ମନରେ ହେଉଥାଇ
କେବେହେଁ ସରଣ ନ ଯାଇ ରେ, ଚନ୍ଦ୍ରମୁଖୀ !

ଜାଣୁ ଯେମନ୍ତ ମନ ମୋର
ଯାଚ ଯେ କହୁ ସେ ଉତ୍ତର,
ଯିବ ସେକଥା ସବୁ     ଜୀବନ ଥାଉ ଥାଉ
ଏହା କରିବେ ଚକ୍ରଧର ରେ । ୮ ।

ଝନବସନ ଫୁଟି     ଜଘନ ସ୍ତନ ଦଶି
ଅଳସ କରଣ ଯେ ଦେହ
ଝସକେତନ ଚହିଁ     ସମସ୍ତ ଜାଣି କର
ଜଗି ଜଗାଇ କରେ ମୋହ ରେ, ଚନ୍ଦ୍ରମୁଖୀ ।
ଝଳ ଲଲ୍ଟପଟ ଦେଖି,
ଝିମଣ୍ଟେ ଧଇର୍ଯ୍ୟ କେ ରଖି,
ଝାଳରେ ଓଦା ହୋଇ     କାମଶ୍ରେଷ୍ଠକା ସହୁ
ରହୁ କ ପାରି ଚନ୍ଦ୍ରମୁଖୀ ରେ । ୯ ।

ନଥିବ ପୁଣି ପ୍ରିୟା     ତୋହର ମନେ ମୁହିଁ
ପାଶରୁ ଆଡ଼ ହୋଇଗଲେ
ନାଗରୀରତନ ରୁ     ନେଧପ୍ରଥମା ମୋର
ପାଶରେ ଥିଲେ ହେଁ ନ ଥିଲେ ରେ, ଚନ୍ଦ୍ରମୁଖୀ !
ନାହିଁ ମୋହର ପୂର୍ବତପ,
ନ ଦେଖିବ ତୋ ଶୋଭାରୂପ,
ନଖି ଦିବସ ଲେଶ     କେଉଁ ଭାବେ ବଞ୍ଚିବ
ଭୋଗ ହୋଇବ ପୂର୍ବପାପ ରେ । ୧୦ ।

ଟିକାଏ ଅନ୍ତରକୁ     ଟାଣ କୁସୁମବାଣେ
ଟାଳଇ ଚଉ ରଥପଥ,
ଟାଣକଟାକ୍ଷୀ ଟେକ     କଟାକ୍ଷ ବକାରରେ
ବଶ କରିଛୁ ମୋର ମତ ରେ, ଚନ୍ଦ୍ରମୁଖୀ !
ଟଳିବ ଯେବେ ଏଡ଼େ ସ୍ନେହ,
ଟାଣ ଅନ୍ତର ତୋ ସେନେହ,
ଟାଙ୍ଗୋଇ କରି ପ୍ରେମ     ଗୁହିଁ ତ ମୋର ମୁଖ
ଚନ୍ଦ୍ରବଦନୀ ସତ୍ୟ କହୁ ରେ । ୧୧ ।

ଠିକ ଶୀରତକାଳେ     ଠାଠଣା କେ କରବ
ମନ ବିକାର ରସପ୍ରିୟା,
ଠାଣି କହିବା ଭାବ     ଓଡ଼ାଏ ବୁଝୁଅଛୁ
ସେଣୁ କରୁଛ ପ୍ରିୟେ ଦୟା ରେ, ଚନ୍ଦ୍ରମୁଖୀ !
ଠିକ ଏ ଦନ୍ତପନ୍ତି ତୋର,
ଠଣ ଘଟଣ ହୀରାସାର,
ଠିକ ଗଣ୍ଡଦେଶରେ     ପାଶେ ବସାଇ ହସୁ
ପାଶୋରବଟି କେନ୍ଦ୍ର ଗୁର ରେ । ୧୨ ।

ଡକା ହେଉଛୁ ଏବେ     ଡାଳମୃଗଜଦନ୍ତୀ
ଡରୁଛୁ ମଦନବାଣକୁ,
ଡୋଳାପିତୁଳ ପ୍ରିୟା     ଡଙ୍କ ଲଗେଣ ମୋର
ଡରାଉଅଛୁ ପରାଣକୁ ରେ, ଚନ୍ଦ୍ରମୁଖୀ !
ଡମ୍ବରୁଜତ ମଧ୍ୟଦେଶ,
ଡମ୍ବରୁ ଦିଶେ ଅତି କୃଶ,
ଡୋଳାରୁ କ୍ଷଣହେଁ କ     ଗୁଡ଼ ନାହିଁ ମୋହର
ଡରାଇ ଏହି ପଞ୍ଚରୂପ ରେ । ୧୩ ।

ଢାଳେହେଁ ତୋହ ବିନୁ     ନ ବର୍ତ୍ତିବ ରମଣୀ
ଢମ ନୋହଇ ଏହୁ ବାଣୀ
ଢଳ ପ୍ରାଣ ନ ଗଲେ     ଦୁଃଖ କେ ନିବାରବ
କହ ରୂ ରସିକ-ସିହ୍ନାଣୀ ରେ, ଚନ୍ଦ୍ରମୁଖୀ !
ଢମ ଏ ନୁହଇ ଯୁକତ
ଢାଳେହେଁ କଣିକୁଁ ଯୁବତ,
ଢୋକଦେବା ପୀୟୂଷ     ଦଣ୍ଡେକେ ସଞ୍ଜୀବ
ବିଧାତା ଏମନ୍ତ ମୁକତ ରେ ।୧୪।

ଆଣି ଗୁଣ ତୋହର     ଅଣୁଏ ମନ କଲେ
ଆସ୍ଥତ୍ୱ ନୁହଇ ଶରୀର
ଆଣି ଯେ ଭୁଜ ସ୍ନେହେ     କନ୍ଧ ଉପରେ ଦେଇ
ସେ କଥା ସିବ କ ପାଶୋର ରେ, ଚନ୍ଦ୍ରମୁଖୀ !

ଏଣିକି ମାଗୁଅଛୁ ଏହା,
ଅଶ୍ରୁଏ ନ ତେଜିବୁ ସ୍ନେହା,
ଅନଙ୍ଗଜ୍ୱର ଯେତେ- ବେଳେ କରିବ ଆସି
ହୋଇବୁ ସେତେବେଳେ ସାହା ରେ । ୧୫ ।

ତୋହ୍ନ ନୟନ ପ୍ରୀତ ସଂସାରେ ନ ଥିବନା
ତରଳ ଅନାଇବା ଭଙ୍ଗି
ତରୁଣୀରତନରେ ପୂର୍ବ ତପ ଥିବାରୁ
ସୁଦସ୍ଥା କଲୁ ଚଳାପାଙ୍ଗି ରେ, ଚନ୍ଦ୍ରମୁଖୀ !
ତରଳ ଦୃଗଞ୍ଚଳ ରଙ୍ଗ,
ତପ କରିପାରଇ ଭଙ୍ଗ,
ତରଳ ଏହୁ ନେହ- କୋଣ ଆଶ୍ରୟ କରି
ଜଗତ ଜିଣିଲା ଅନଙ୍ଗ ରେ । ୧୬ ।

ଥିବ ତୋ ପାଶେ ବସି ଥିବରେ ଦିବାନିଶି
ଶମ୍ଭୁରେ ମାଗୁଅଛିଁ ବର
ଥାପିତ ଏତେ କଥା ଆନ କରିବ ଧାତା
ଏହାଁଭି ଆନ କି ନିଷ୍ଠୁର ରେ, ଚନ୍ଦ୍ରମୁଖୀ !
ଥିବ ତ କଥା ସବୁଦିନେ,
ଥିଲା ଏମନ୍ତ ମୋହ ମନେ,
ଅନଙ୍ଗଘନ ଥିର ହେଉ ନାହିଁ ତ ଚିତ୍ତ
ଜାଆଅ ତୋ ଅଧରପାନେ ରେ । ୧୭ ।

ଦସ୍ୟା ଜଳଧି ବନ୍ଧୁ- ଅଧର ଦନ୍ତେ ଧରି
ଆନ୍ଦୋଳି କରଇ ଆଶ୍ଳେଷ
ଦଶଦ୍ୱନ୍ଦ୍ୱି ତୋର ଦେହକୁ ପୀଡ଼ା କରେ
ନଧରବୃତ୍ତି ମନେ ଦେଷ ରେ, ଚନ୍ଦ୍ରମୁଖୀ !
ଦାସ ହୋଇଲେ ଦୋଷକାସ୍ତି
ଦସ୍ୟା ନ ତେଜିବୁ ତା ଧରି,
ଦୋଷ ହିଁ ଗୁଣ କରି କେଉଁ କଥାରେ ଯେନ
ରୁ ତାହା ବସ୍ତୁର ସୁନ୍ଦରି ରେ । ୧୮ ।

ଧର ମୋହର କର ଦେଇ ଭର ଉପର
ହସିଣ କହୁ ରୁ ଉତ୍ତର
ଧୀରଗମନୀ ତାହା ଯେଉଁ ଷଣି ଶୁଣିବ
ପସ୍ରିଣ ରହିବ କାହାର ରେ, ଚନ୍ଦ୍ରମୁଖି !
ଧାତାକୁ ଯୋଡ଼ୁଅଛୁ କର,
ଧର ରୂ ବଚସ୍ମ ମୋହର,
ଧରଣୀମଣ୍ଡନା ତୋ ପଦ୍ମସୁବାସ ଦେହ
ଷଣେହେଁ ଅନ୍ତର ନ କର ରେ । ୧୯ ।

ନାହିଁ ନାହିଁ ଭୁବନ ମଧ୍ୟେ ତୋତେ ସମାନ
ସୁନ୍ଦରୀ ସୁରସିକପଣେ
ନ ଥାଇ ଦେହେ ଜ୍ଞାନ ଛୁଇଁଲେ ଦେହ ତୋର
ଏ କଥା ମନମଥ ଜାଣେ ରେ, ଚନ୍ଦ୍ରମୁଖି !
ନିଶ୍ୱାସ କମ୍ପାଇ ଯେ ତେଜୁ
ନୟନ ମନ୍ଦ ମନ୍ଦ ବୁଜୁ,
ନପାଇଲେ ସେ ଭାବ କପାଳେ ଥିବ ଜାବ
ଚନ୍ଦ୍ରମା ଆନନୀ ନ ହେଜୁ ରେ । ୨୦ ।

ପଦ୍ମବଦନୀ ପ୍ରିୟା ପଲ୍ଲବ ପାଣିତଳ
ପାଦକୁ ବଢ଼ାଇ ଯେ କହୁ
ପ୍ରସଙ୍ଗେ ରୁଷାରୁଷି କ୍ଷଣେ ମାତ୍ର ପଡ଼ିଲେ
ସମସ୍ତ ପ୍ରକାରେ ନ ସହୁ ରେ, ଚନ୍ଦ୍ରମୁଖି !
ପଢ଼ିଲୁ ଅଛି ପରମାଦ
ପ୍ରାଣକୁ ପ୍ରମାଦ ବିଷାଦ,
ପୀୟୂଷହାସମୁଖୀ ପ୍ରସନ୍ନ ହେବ ଚନ୍ଦ୍ର
ଗୁହିଁ ଏ ଜନମର ଖେଦ ରେ । ୨୧ ।

ଫୁଟିଲି ଅରବିନ୍ଦ ପ୍ରାସ୍ତେ ବାସଇ ମୁଖ
ଆଘ୍ରାଣେ ମଦନ ଆତୁର
ଫୁରୁଣା (୧) ଆନନୀର ଆନନ ସମାନକୁ
କେଉଁ ଗୁଣରେ ସୁଧାକର ରେ, ଚନ୍ଦ୍ରମୁଖି !

---

(୧) ଫୁରୁଣା—ପ୍ରଫୁଲ୍ଲ ।

ଯାଇ ବନରୁ ଆସିଥିଲା
ସୁନ୍ଦ ଏତେ ବନେ ବଣିଲା,
ଫନ୍ଦାଇ ତ ବିଧାତା ହାତରେ ଆଣିଦେଇ
ଅନାଉ ଅନାଉ ହରିଲୁ ରେ ।୧୨।

ବିଧୁକରଣେ ବସି ବିଧୁମଣ୍ଡଳ ସୃଷ୍ଟି
ବଦନେ ଲଗାଇ ବଦନ
ବିଧୁମଣ୍ଡଳ ଥିବ ବନ୍ଧୁ ଏକା କରିବ
କୁଣଳେ ରୁହାଇ ଜୀବନ ରେ, ଚନ୍ଦ୍ରମୁଖି !
ବସନଭୂଷାରେ ତୋ ଦେହ,
ତାରେ ଅନାଇ ହୋଏ ମୋହ,
ବିଧୁବଦନୀ ବାମା ଅନାଇ ହସି ବୋଲୁ
ବନ୍ଧୁ ହେ ଏତେକ ନ ସହ ରେ ।୧୩।

କେଶୀ ହାତରୁ ଗତ ବିଧାତା ହରୁଅଛୁ
ମୋହ ହାତୁଁ ହରିବ ତୋତେ
ଗଗନ କ୍ଷଣେ ହେଁ ତୁ ମୋତେ ନ ପାଶୋରୁ
ମୁଁ ତୋତେ ମାଗୁଅଛୁ ଏତେ ରେ, ଚନ୍ଦ୍ରମୁଖି !
ଭୂଷଣମଣି ତୁ ମୋହର,
ଗଗ ଅଭେଦ ମୋତହାର,
ହେ ପ୍ରାଣମଣି ମୋର ପ୍ରାଣ ତୁ ରକ୍ଷାକର
କ୍ଷଣେହେଁ ନୋହୁ ଅନ୍ତର ରେ ।୧୪।

ମନ୍ମଥମଣ୍ଡନା ମୋତେ ତାପ ହୋଇବା କଥା
ଅଛନ୍ତି ଅନ୍ତର କାଳରେ
ମୋହ ନୟନପଥେ ଯେତେବେଳେ ହିଁ ଥିବୁ
ଦେହ ଲଗାଅ ମୋର ଦେହେ ରେ, ଚନ୍ଦ୍ରମୁଖି !
ମନେ ବିଚ୍ଛେଦ କଥା ପଡ଼ି
ମୋ ପ୍ରାଣ ଯାଉଅଛୁ ଛାଡ଼ି,
ମୁଖକୁ ଚାହିଁ ତୋର ମହାଆନନ୍ଦ ହୋଇ
ପୁଣି ରହଇ ସୁଖେ ବୁଡ଼ି ରେ ।୧୫।

ଜାଣୁଛି କ ଯୁବତୀ ଯାମିନୀ ଅନ୍ତେ ଦିନେ
ପଢ଼ିଲ ଯେଉଁ ଯେଉଁ ରସ
ଯୋଡ଼ ଯୁଗଳକର ଯାହା ବୋଇଲୁ ପ୍ରିୟା
ହୋଇ ଅଳପ ହସ ହସ ରେ, ଚନ୍ଦ୍ରମୁଖି !
ଜାଣିଲି ଯିବ ଯେଡ଼େ ଛବ,
ଯା ମୁଖ ଦେଖି କେ ଛାଡ଼ିବ,
ଜାଣୁ ମଣିରତନ ଯେତେକ ବୋଲିଅଛୁ
ସେ କଥା କେହି ନ ରହିବ ରେ । ୨୬ ।

ରମଣୀ ରସବତୀ ଅତି ସୁରସମତି
ରହିଲା କେବଳ ଏ କଥା
ରଙ୍କ ହାତୁଁ ରତନ କେ କେଣେ ହରିନେଲା
ମନୋଗତେ ରହିଲା ବ୍ୟଥା ରେ, ଚନ୍ଦ୍ରମୁଖି !
ରହିବ ତୋ ବିନୁ ଏ ଜୀବ,
ରତିଏ କେ ପ୍ରତେ କରିବ,
ରମାରତନ ପାଶେ ଥାଉଁ ଯେସନ୍ତ ଜୀବ
ଏ ଯଶ ବହୁତ ରହିବ ରେ । ୨୭ ।

ଲାବଣ୍ୟମଣି ମୁଖ ହୃଦମଣ୍ଡଳେ ମୋର
ନୟନ ଲଖି ରହିଅଛୁ
ଲୋଭେ ଛାଡ଼ଇ ନାହିଁ ଲଳିତ ଲପନା ଏ
ନ ପାରିବ ମୋତେ ମୁଞ୍ଚୁଛୁ ରେ, ଚନ୍ଦ୍ରମୁଖି !
ଲୋଭ ଲଗାଇଅଛୁ ତୋତେ,
ଲୀଳାରେ କିଣିଅଛୁ ମୋତେ,
ଲଗିଥିଲା ସେନେହ ବିଧାତା ଭଙ୍ଗାଇଲା
ଏ ଦୋଷ ପାଇବୁ ଯୁଗତେ ରେ । ୨୮ ।

ବସନ ଯେନ ପ୍ରୀତି ଅନ୍ତେ ବିହ୍ୱଳ ଛବ
ପାଶୋରିବୁ ରେ ସୁଧାମୁଖି !
ବୃଜ ଯେ ଥାଉ ଆକ୍ଷ ପଢ଼ିଲୁ ନଦୁ ହଠି
ଜାଇ ମୁଁ ଯାଇ ତାହା ଦେଖି ରେ, ଚନ୍ଦ୍ରମୁଖି !

ବସି ହୃଦୟେ ଦେଇ ମୁଖ
ବଢ଼ାଉଥାଉ ଯେଉଁ ସୁଖ,
ବେଳକୁ ବେଳ ସେହୁ କଥା ମନରେ ପଡ଼ି
କାମ କରୁଛୁ କାଣ୍ଡ ଲିଖ ରେ । ୨୯ ।

ସରଳ ପୀରତିରେ ସନ୍ତୋଷ ନୋହୁ ସଖି
ସରାଗ କରି ଦେହେଁ ମିଶୁ
ସତେହେଁ ପୀରତିକି ଆତୁର ମନ ଅଛୁ
ପଶୁରଲେ ମଧୁର ସ୍ୱପ୍ନ ରେ, ଚନ୍ଦ୍ରମୁଖି !
ସେ କଥା ମନେ ଚତୋଇବ,
ସତେହେଁ କେମନ୍ତେ ଜୀଇବ,
ଶିଶୁକୁରଙ୍ଗନେତ୍ରୀ ସନ୍ତୋଷ ହୋଇ କହ
ଏବେ ମୁଁ କେମନ୍ତେ କରିବ ରେ । ୩୦ ।

ସୁନ୍ଦର ଶୋଭା ତୋର ମନ ହରିଲା ମୋର
ମୋର ଆପ୍ତ ହେଉନାହିଁ
ସତତେ ଆନନକୁ ଅନାଇ ବସିଥିଲେ
ଚନ୍ଦ୍ରମୁଖ ପ୍ରାୟେ ଲାଗଇ ରେ, ଚନ୍ଦ୍ରମୁଖି !
ସରୁ ସରବ ପାଶୁ ଗଲେ
ସରଇ ତୃଷ୍ଣ ପାଣି ମଲେ,
ଶରଦଶଶୀମୁଖୀ ହେଉଥାଏଁ ମୁଁ ସୁଖୀ
ପାଶେ ନିରତେ ଦେଖୁଥିଲେ ରେ । ୩୧ ।

ସବୁକାଳରେ ବସି ଆଶା ତୋତେ ନିବେଶି
ସନ୍ତୋଷ ହେଉଅଛୁ ମନ
ସେ କଥା ବିଧିବଶେ ବହୁକାଳ ନ ରହୁ
ବେଗେ ହେଉଛୁ ଭିନ୍ନ ଭିନ୍ନ ରେ, ଚନ୍ଦ୍ରମୁଖି !
ସେନେହ ମନେ ଯେବେ ଥାଇ
ସେ କଥା କେବେହେଁ ନ ଯାଇ,
ସବୁଆଡ଼ରେ ଉଡ଼ି ଚକ୍ର ଯେମନ୍ତ ହୋଇ
ଦଉଡ଼ି ପାଶକୁ ଆସଇ ରେ । ୩୨ ।

ହଂସଗମନୀ ମନେ ହେଉ ତୁ କରିଥିବୁ
ମୁହିଁ ତୋହର ନିଜ ଦାସ
ହେମବରଣୀ ବନୁ ମୋହ ମନ ଏମନ୍ତ
ଥିବ ମୁଁ ନାହିଁ ଆନ ପାଶ ରେ, ଚନ୍ଦ୍ରମୁଖି !
ହେଲା ତୁ ନ କରିବୁ ମୋତେ,
ହରଷ ଧରିଥିବୁ ଚିତ୍ତେ,
ହର ସୁହସ୍ତା କଲେ ହରଷ ହୋଇ ପୁଣି
ଭେଟ ହୋଇବ ଅହୋରାତ୍ର ରେ । ୩୩ ।

କ୍ଷିତିମଣ୍ଡଳୀ ସୁକୁ- ନ୍ତଳା ଦେହୀର ପ୍ରାଣ
କ୍ଷଣେ ସୁକୁମାରବତୀ
କ୍ଷୀରୋଦଧି ପଦ୍ମା- ବତୀ କସ୍ତୁରୀ ଦେହୀ
ଭାଗ୍ୟବତୀ ଜୀବତ ମତି ରେ, ଚନ୍ଦ୍ରମୁଖି !
ଛନ୍ଦାଳ ଯାଉରଳା ଦେହ
ଗ୍ରହିବା ଶବଦ ତା ଦେହ,
କ୍ଷମେ ଭଣିଲେ ଗୀତ ବାଣପୁର-ଅଧିପ
ହରିଚନ୍ଦନ ବେଦବାହ ରେ । ୩୪ ।

---

ଲେଖକ : ରାମ ଦାସ

## ଶରୀରଭେଦ ଚଉତିଶା

( ଫୁଲତାର ବୃତ୍ତେ )

କହଇ ଚଇତନ ସୁମନ ଦାଇ,
କ ସୁଖ ଦେଖି କର୍ମେ ହେଉଛୁ ବାଇ ହୋ,
ରହିବ ନାହିଁ,
କଲ୍ୟାଣ ମହାନଦୀ ଦେବ ଭସାଇ ହୋ । ୧ ।

ଖେତ୍ରମଣ୍ଡଳେ ନରଦେହ ବହିଲୁ ।
ଖଣକ ସୁଖ ଦେଖି ଭୁଲିପଡ଼ିଲୁ ହୋ,
ଖେଳୁଛୁ ଅନା,
ଖଟି ନ ପାରି ଫିଟାଇଲୁ ବାସନା ହୋ । ୨ ।

ଗଙ୍ଗା ଯାହାର ନଖକୋଣୁ ଝରଛି
ଗୁମ୍ଫାକୁ ଭେଦ ଉଜାନ ଧାର ବହୁଛି ହୋ,
ଗଗନ ଘାଟେ,
ଗଲା ତ୍ରିଭୁବନକୁ ତଳେ ଚହଟେ ହୋ ।୩।

ଘଟ ଗଢ଼ିଛି ତୋର ପଞ୍ଚାଶ ଦଳେ
ଘେନ ବହୁରୂପକୁ ଆନନ୍ଦଖେଳେ ହୋ,
ହୁଙ୍କାର ନାଦ,
ଘଟେ ବାଜୁଛି ବାର ଦ୍ୱାଦଶ ବାଦ୍ୟ ହୋ ।୪।

ଙଲଟ ତରୁ ସଦାନନ୍ଦ ନାମରେ
ଅପୂର୍ବ ଜଳ ଚଳୁଅଛି ଶୂନ୍ୟରେ ହୋ,
ଅଲଗା ହୋଇ,
ଓଲଟ-ପାଲଟ ତା ଖେଳ ବୋଲାଇ ହୋ ।୫।

ଚୌଦନ ଅକ୍ଷର ବାରମାଝା ଘେନଛି
ଚଖେଇ ସର୍ବଦାରେ ବାଣ କହୁଛି ହୋ,
ଚଉରେ ଚନ୍ଦ୍ର,
ସ୍ୱରଦୁଆର ସ୍ୱରତତ୍ତ୍ୱକୁ ଘେନ ହୋ ।୬।

ଛପନ କୋଟି ଛନ୍ଦରେ ତୋ ମୂର୍ତ୍ତି ସାର
ଛନ୍ଦୁଛି ନାନା ବର୍ଣ୍ଣେ ତୋର ଆଗର ହୋ,
ଛୁଇ ଆକାର,
ଛକଟେ ନାରାୟଣ କ ଅବତାର ହୋ ।୭।

ଜଗତଯାକେ ଦେଖ ଗୁହ୍ୟ ସେ ସାର
ଯହିଁ ଅଶେଷ ଲୀଳା ନରଶରୀର ହୋ,
ଜୀବଇ ଗୁରୁ,
ଜାଣି ରଚଛି ମେରୁ ସେ ମହାମେରୁ ହୋ ।୮।

ଝିମିଟେ ନ ଭାବିଲୁ ଏ ସୁଖେ ଥାଇ
ଝୁରି ମରିବୁ ପଛେ ପାଇବୁ ନାହିଁ ହୋ,
ଝିନନାଳକୁ,
ଝରକୁ ଟେକ ଦୃଷ୍ଟି ଦେଖ ତାହାକୁ ହୋ ।୯।

ନାମରୁ ରୂପଟି ଯେ ପ୍ରକାଶେ ତୋର
ନାଦବିନ୍ଦୁଟି ଜାତ କଲ୍ଲ ସଂସାର ହୋ,
ନୀଳାଦ୍ରି ପଥ,
ନଷ୍ଟେ ତୋ ଦେହ ଲାଗି ହୋଇଛୁ ଶାନ୍ତ ହୋ ।୧୦।

ଟେକ ଓଁକାର ଅର୍ଦ୍ଧମାତ୍ରା ଉପରେ
ଟେକି ରୁ ରହ ବିନ୍ଦୁ କର୍ଣ୍ଣିକା ଘରେ ହୋ,
ଟଳବ ନାହିଁ,
ଟାଣେ ରୁ ଜଗରନ୍ଧ୍ର ନିଶ୍ଚଳ ହୋଇ ହୋ ।୧୧।

ଠୂଳ ଖଜିଲେ ଉନେ ହୋଇବ ଶୂନ୍ୟ
ଠକଣା ନ ରହିବ ହେବ ପତନ ହୋ,
ଠିକ କହୁଛୁ,
ଠିକେ ଗ୍ରମ ଭ୍ରମିଣ କର୍ମେ ପଡ଼ୁଛୁ ହୋ ।୧୨।

ଡାକୁଛୁ ଶୁଣୁଅଛୁ ସର୍ବ ବ୍ୟବସ୍ଥା
ଡୋଲେ କାଳ କମଳ ଆପେ କରତା ହୋ,
ଡାକୁଛୁ ଚହ୍ନି,
ଡାହାଣେ ରବି ବାମେ ଚନ୍ଦ୍ର ଆସନ ହୋ ।୧୩।

ଢେଉକୁ ଢୋଳ ଷୋଳ ଡମ୍ବରୁ ପରେ
ଢାକୁଣି ଫେଡ଼ି ଦେଖ କାମବୀଜରେ ହୋ,
ଢୋଲ ଭିତରେ,
ଢୋଲେ ବଜୁଛୁ ବାଦ୍ୟ ଦ୍ୱାଦଶ ସ୍ୱରେ ହୋ ।୧୪।

ଅକ୍ଷୟ ଦେହ ରୂପ ମୂର୍ତ୍ତି ବୋଲାଇ
ଅଣାକ୍ଷର ଶବଦ ପୁରୁଷ ହୋଇ ହୋ,
ଅପୂର୍ବ ଯନ୍ତ୍ରୀ,
ଅଲେଖ ପାଟଣାରେ ଆପଣେ ମନ୍ତ୍ରୀ ହୋ ।୧୫।

ତଥି ତ୍ରିବେଣୀ ପରେ ସଙ୍ଗମ ଘାଟ,
ତସ୍ୟ ବୀଜ ଉପରେ ବସିଛୁ ହାଟ ହୋ,
ତ୍ରିକୋଣ ଯେନ୍ତ୍ର,
ତନପୁରକୁ ଯା'ର ଶୁଭୁଛୁ ଧ୍ୱନି ହୋ ।୧୬।

ଥପ୍ପ କରବୁ ଆରେ ମନକୁ ତୋଳ,
ଥାଳ ଆବୋର ଦେଖ ବ୍ରହ୍ମକୁଣ୍ଡଳ ହୋ,
ଥରେ ଦେଖିଲେ,
ଥିବୁ ତୁ କାଳେ କାଳେ ଏ ଭବଭୋଳେ ହୋ । ୧୭ ।

ଦୁର୍ଲ୍ଲଭ ଦେହ ତୋର ଅଶେଷ ବର୍ଣ୍ଣି,
ଦେଖି ବାର ବାରୁଛୁ ସେ ଚନ୍ଦ୍ରମାନ ହୋ,
ଦଶଁକୁ ଦେଖ,
ଦଦ୍ଧକ ସୁନାପାଣ ଦଶେ ଦଦ୍ଧକ ହୋ । ୧୮ ।

ଧୂନ ଉପରେ ଜ୍ୟୋତ ଜ୍ୟୋତରେ ମନ,
ଧ୍ୟାନେ ଦେଖ ପୁରୁଷ ସେ ନୀଳବର୍ଣ୍ଣ ହୋ,
ଧରିଛୁ ଅଙ୍ଗ,
ଧ୍ରୁବମଣ୍ଡଳ ଭେଦ ସେ ବ୍ରହ୍ମଭାଗ ହୋ । ୧୯ ।

ନଶବଦୁଁ ଶବଦ ଶବଦୁଁ ବେଦ,
ନଷ୍ଟେ କର ତୁ ଜାଣ ଏ ଆତ୍ମାଭେଦ ହୋ,
ନକର ହେଳା,
ନଷ୍ଟେ କର ଭରସା ଭବନା ଭେଳା ହୋ । ୨୦ ।

ପ୍ରତ୍ୟେକ ଘର ଜାଗି ତା ଟେକ ଧର,
ପର ରଜ ଶବ୍ଦ ଭଜନ କର ହୋ,
ପରମ ତତ୍ୱ,
ପ୍ରତେ କର ନରତେ ଚନ୍ଦରେ ପୋଷ ହୋ । ୨୧ ।

ଫେରୁ ଉପରେ ମଣିମଣ୍ଡଳ ଶୋଭା,
ଫୁଲ ସହସ୍ର ଦଳ ମଧ୍ୟେ ଦେଖିବା ହୋ,
ଫରଗ୍ଯ ହୋଇ,
ଫୁଲ ସିଂହାସନରେ ମୂରତ ଦୁଇ ହୋ । ୨୨ ।

ବଡ଼ ଅପୂର୍ବ ଚମତ୍କାର ସେ ସ୍ଥାନ,
ବ୍ରଜ ବାନ୍ଧବୀ ସଙ୍ଗେ ନନ୍ଦନନ୍ଦନ ହୋ,
ବୟସ୍ୟ ପଣ,
ବଜାଙ୍ଗନା ଗୋପୀଏ ଅଛନ୍ତି ଆବୋର ହୋ । ୨୩ ।

ଭବ ବିରଞ୍ଚି ଯେଉଁ ସ୍ଥାନକୁ ଧ୍ୟାୟି,
ଭରସି ନପାରନ୍ତି ଭକ୍ତଙ୍କୁ ପାଇ ହୋ,
ଭାବରେ ରସ,
ଭଣ୍ଡ ଗ୍ରାମ କହୁଛୁ ଚଉଟରେ ଘୋଷ ହୋ । ୨୪ ।

ମନ ପବନ ଏହୁ ଶବଦ ତାର,
ମନ ରସିକ ବାସ ସର୍ବ ଗୋଚର ହୋ
ମଠ ବଳାଇ,
ମୁରଲୀଧର ପାଦେ ରହ ତୁ ଧ୍ୟାୟି ହୋ । ୨୫ ।

ଯାଉଛୁ ଆସୁଅଛୁ ଯିବଟି ବନ୍ଧ,
ଜାଗ ଆଜର ଘରେ ରୁକାର ଧ୍ୟାୟି ହୋ,
ଜଳୁଛୁ ଜ୍ୟୋତ,
ଯହିଁରେ ଚନ୍ଦ୍ର ସୂର୍ଯ୍ୟ ଏକ ମୂରତ ହୋ । ୨୬ ।

ରସନା ଦେଇ ବଙ୍କନାଳ ଦୁଆରେ,
ରଙ୍ଗେ ଟେକରୁ ରସ ରହୁ ଶିବରେ ହୋ,
ରାଜ ଦବସ,
ରୂପ ହୋଇଛୁ ଅଣାକାର ପୁରୁଷ ହୋ । ୨୭ ।

ଲସ୍ତେ ଅଗଲୀଳା ତୋ ଭୋଗ ଅଙ୍ଗୁରେ,
ଲାଭିବା ଅଙ୍ଗକୁ ଧଣବେ କଶୋରେ ହୋ,
ଲାବଣ୍ୟନିଧି,
ଲୀଳା କରୁଛୁ ଯେନ ଏ ଅଷ୍ଟସିଦ୍ଧି ହୋ । ୨୮ ।

ବସନ୍ତ ସଦା ଯହିଁ ଚଳ ଭ୍ରମର ।
ବ୍ରଜମୋହନ କ ଏ ଗୋଲୋକପୁର ହୋ,
ବଳମ୍ବ କଲୁ,
ବାରେ ଗୋପୀଙ୍କ ଭାବ ତୁ ବିସ୍ମରିଲୁ ହୋ । ୨୯ ।

ଶ୍ରୀମନ୍ତ ପରତ୍ୟକ ସେବାକୁ ଯେନ,
ଶବଦ ଘରେ ପଶି କର ଦର୍ଶନ ହୋ,
ସେହୁ ପୁରୁଷ,
ସଚରାଚର ବର୍ତ୍ତେ ହୋଇଛୁ ଦୃଶ୍ୟ ହୋ । ୩୦ ।

ଶୂନ୍ୟଟି ଅଣାକାର ଆକାର ନାହିଁ,
ଶବଦ ପବନ ଏ ମୂର୍ତ୍ତି ବୋଲାଇ ହୋ,
ସର୍ଜନା କର୍ମ,
ସଂସାର ଆବୋରଛୁ ଉଗାଳ ବ୍ରହ୍ମ ହୋ । ୩୧ ।

ସୂର୍ଯ୍ୟର କାଳ ଘନ ଚନ୍ଦ୍ର ଆଗରେ,
ସପ୍ତାଙ୍ଗ ତଥି ଯୋଗ କରଣ ଘରେ ହୋ,
ସତାଇଶରେ,
ଷୋଳବ୍ଦି ଗୁଣ ଯେନ ଲୀଳା ପ୍ରଚରେ ହୋ । ୩୨ ।

ହରଷେ * ଖେଳ ଏହ୍ୱ ମାଢରେ,
ହେଜଥା ଷୋଡ଼ଶକୁ ମନ୍ତ୍ରଭେଦରେ ହୋ,
ହେଳା ନକର,
ହରେ ରାମକୃଷ୍ଣ ଏ ସଜ ବୀଜର ହୋ । ୩୩ ।

କ୍ଷଣେ ଏଣେ ନମିଷେ ଅମ୍ବାରେ ଦୋଷ,
ଛଛନ୍ଦେ ଜ୍ଞାନଚନ୍ଦ୍ର ହେବ ପ୍ରକାଶ ହୋ,
ଛୁଡ଼ୁ ଯାମିନ,
ଛୁର ରାମ କହୁଛୁ ଅଠ ଅଜ୍ଞାନୀ ହୋ । ୩୪ ।

---

ଲେଖକ : ଲୋକନାଥ

## ଜାନକୀ-ସ୍ମରଣ ଚଉତିଶା

(ରାଗ—କେଦାର କାମୋଦୀ)

କମଳନେତ୍ର ଦଶରଥନନ୍ଦନ
କମଳାଦେବୀ କାନ୍ତ ଜଗବନ୍ଦନ ହେ ।
କାନ୍ତା ବଚ୍ଛେଦେ ମାଲ୍ୟବନ୍ତ ପର୍ବତେ
କରୁଛନ୍ତି ଯେ ଚିନ୍ତା ଅନୁବରତେ ଯେ । ୧ ।

ଖମଣ୍ଡଳରେ ପଡ଼ି ଜଳଦଧାଡ଼ି,
ଖରେ କରଇ ମହା ଘନ ଘଡ଼ଘଡ଼ି ଯେ ।
କ୍ଷଣେ ବିଶ୍ରାମ ନାହିଁ ସଲିଳ ବୃଷ୍ଟି,
ଖେଦଇ ନାହିଁ ଦଗମାନଙ୍କ ଦୃଷ୍ଟି ଯେ । ୨ ।

ଗହଳ ହୋଇ ଶିଖୀ ଭେକ ଡାହୁକ
ଗାଢ଼େ ଶବଦ ଗୋଳ କଲେ ଅନେକ ଯେ ।
ଗର୍ଜିଲେ ବରହ୍ମଣୀ ବରଷ୍ଣକୁଳ
ଗତ ସୁରତ ଚନ୍ଦ୍ର ହୋଏ ବିକଳ ଯେ । ୩ ।

ଘୋଷନ୍ତ ପ୍ରିୟା ଗୁଣ ରଘୁନାଥଙ୍କ
ଘୋଟିଛୁ ଅଙ୍ଗେ ଉତ୍ପଳ-ସାୟକ ଯେ ।
ଘନକୋଳରେ ଦେଖି ବିଦ୍ୟୁତଲତା
ଘନେ କହନ୍ତି ଘନ ନାହିଁ ମୋ କାନ୍ତା ରେ । ୪ ।

ନଦଅ ମୋତେ ତୁମ୍ଭେ ଏ ଦରଶନ
ନଇର ଜଳନ୍ତାରେ ତୃଣ ପତନ ଯେ ।
ନୟନପ୍ରତିମାକୁ ପାଇବି ଯେବେ
ନବ ସମ୍ପତ୍ତି ଯେନ ଆସିବ ତେବେ ଯେ । ୫ ।

ଚଣ୍ଡେ ଚଳ ଜଳଦ ଏତେକ ସ୍ପର୍ଶି,
ଚଞ୍ଚଳ ଚଟେ ଚନ୍ଦ୍ରା ଚଞ୍ଚଳଦୃଶୀ ଯେ ।
ଚତୁସ୍ଥନି ଚନ୍ଦ୍ରବଦନା ଧାନେ
ଚଳଚଉ ଯେ ତନୁ ଅତି ସଘନେ ଯେ । ୬ ।

ଛାଡ଼ିଲେ କ୍ଷଣେ ମୁଁ ନ ଯାଇ ଯାହାକୁ
ଛଣକ ମାଝେ କେହ୍ନୁ ନେଲା ତାହାକୁ ଯେ ।
ଛାଡ଼ିଲା ଧର୍ମ ମୋତେ ବିନା ଦୋଷରେ
ଛଡ଼ପଡ଼ିବ ମଝି ରସାତଳରେ ହେ । ୭ ।

ଜାତ ପଦ୍ମିନୀ ଦିନେ ଦିନେକ ମୋତେ
ଯେତେ ସୁଖ ଦେଇଛୁ କହିବି କେତେ ଯେ ।
ଜୀବନ ଥିଲେ କେମନ୍ତେ ତା ମୁର୍ଚ୍ଛିଲି
ଜୀବନବନ୍ଧୁ ହା-ହା ଏହା ଅର୍ଜିଲି ରେ । ୮ ।

ଝଷକମୁଖୀ ମୋତେ ନ ଦେଖିକର
ଝୁରୁ ଯେ ଥିବ ମୋର ଗୁଣ ସୁମରି ଯେ ।
ଝୁରୁ ଯେ ଥିବ ତାଙ୍କ ନୟନୁ ନୀର
ଝଟଡ଼ା କରୁଥିବ କୁସୁମଶର ଯେ । ୯ ।

ନିର୍ମଳ ମଠ ମୋର ବୋଲ ନ କଲ
ନିର୍ଦ୍ଦୟା ନିଶାଚର ପୁରେ ରହିଲ ଯେ ।
ନିରାଶ ହୋଇ ଦୁଃଖେ ବଞ୍ଚୁ ଯେ ଥିବ
ନିଶି ଦିବସ କେଉଁ ପ୍ରକାରେ ନେବ ଯେ । ୧୦ ।

ଟେକିଥିବ ଶ୍ରବଣ ମୋର ନାମକୁ
ଟାକି ଯେ ଥିବ ନିଷ୍ଟେ ଭେଟ ହେବାକୁ ଯେ ।
ଟକି ଯେ ଥିବ ତାର ଲାବଣ୍ୟ ପାତ୍ର
ଟାଣ ଦୁଃଖକୁ ଏବେ ହୋଇଲି ପାତ୍ର ଯେ । ୧୧ ।

ଠିକ ହୋଇଣ ଯେତେ ନାନା ପ୍ରମାଦ
ଠୁଳ କରିଣ ଆସି ହେଲା ପ୍ରମାଦ ଯେ ।
ଠାକୁର ରାମ ସୀତା ଲକ୍ଷ୍ମଣ ପାଦ
ଠିକେ ଲୋକନାଥର ସର୍ବସଂପଦ ଯେ । ୧୨ ।

ଡମ୍ବ କନକ ନିନ୍ଦେ ଶ୍ରୀଅଙ୍ଗ ଜ୍ୟୋତି,
ଡାଳିମ୍ବବୀଜ ସମ ଦଶନପନ୍ତି ଯେ ।
ଡମ୍ବରୁମଝି କ୍ଷୀଣ କଟିର ଭ୍ରାନ୍ତି
ଡାକ ଶୁଣିଲେ ପିକ ମୂକ ହୁଅନ୍ତି ଯେ । ୧୩ ।

ଢାଙ୍କିଥାଇ ତନୁରେ ଯେତେ ବିକାର,
ଢାଳ ବ୍ରହ୍ମାଣୀମାନ କରେ ଅପାର ଯେ ।
ଢାଳ ଯେ ବୁହୁଁଥାଇ ବଦନ ଶଶୀ
ଢଳଢଳ ଚକ୍ଷୁରେ ଦିଶୁଛୁ ଆସି ଯେ । ୧୪ ।

ଅଣିମାଦି ସମ୍ପତ୍ତି ଲଭିଣ ଥିଲି
ଅଣବିପତ୍ତି ହେବ ଜାଣି ନ ଥିଲି ଯେ ।
ଅଣବିପତ୍ତି ଆସି ହୋଇଲାଯାକେ
ଅଣୋଶ ବନ୍ଧିଲ ଏକାବେଳକେ ଯେ । ୧୫ ।

ତରିବାକୁ ଉପାୟ ଆଉ ନ ଦିଶେ
ତରୁଣୀ ବନ୍ଧୁ ସବୁ ଉଦ୍ଧାର ଦୋଷେ ଯେ ।
ତରୁଣ କାଳେ ହେଲା ଏତେ କଷଣ
ତଥାପି ରକ୍ଷା ଯେ ହୁଅନ୍ତା ମରଣ ଯେ । ୧୬ ।

ଥିଲେ ତା ପାଖେ ଯାହା ହୁଅଇ ମନ
ଥୋଇ ନ ଦେଲା ତାହା ତରୁଣୀଜନ ଯେ ।
ଥିଲା ଯା ମନେ ତାହା କଲା ମୋ କଥା
ଥରେହେଁ ପୁଣି ତା ନକଲା ଅନ୍ୟଥା ଯେ । ୧୭ ।

ଦୁଃଖନାଶିନୀ ଜନୁ ହୋଇଲା ଦୁଃଖୀ
ଦୁଃଖ ଦେଖିଲା ନାହିଁ ଚନ୍ଦ୍ରମାମୁଖୀ ଯେ ।
ଦୁଃଖ ଜଗକୁ ଜାତ କଲା ଦଇବ
ଦୁଃସହ ପାପ ଫଳ କେତୁ ସମ୍ଭବ ଯେ । ୧୮ ।

ଧରଣୀମଣ୍ଡଳୀ ରେ ଆନନ୍ଦସୁଖୀ
ଧରି ମୋ ହାଥ ଏହା ଅର୍ଜିଲୁ ସଖୀ ରେ ।
ଧନ ହେଉ ମୋହର ସମର୍ପଣ
ଧିକ ଏ ଧନୁଶର ଧିକ ପରାଣ ଯେ । ୧୯ ।

ନବପଞ୍ଚ (୧) ଭୁବନେ ଯେତେକ ନାରୀ
ନୁହନ୍ତି ତାର ପଦ୍ମପାଦକୁ ସରି ଯେ ।
ନଳରେ ଏଣୁକରି କାହାକୁ ଲକ୍ଷ୍ୟ
ନୋହୁଅଛୁ ନୋହିବ ନାହିଁ ପ୍ରତ୍ୟକ୍ଷ ଯେ । ୨୦ ।

ପାଶେ ତା ଥିଲେ ଯାହା ହୁଅନ୍ତି ମନ
ପଥେ ଉପଥେ ନାନା ବେଦନାମାନ ଯେ ।
ପାଇ ମନରେ ତନେ ନକଲି ଅନ
ପରମ ପବିତ୍ର ମୋ ପରାଣଧନ ଯେ । ୨୧ ।

ଫୁଲଇ ଛଲଫୁଲ ନାସିକା ସୁଡ଼ା
ଫୁଟୁଣା ହୋଇ ହସି ତାଳେ ପିଚ୍ଛଡ଼ା ଯେ ।
ଫାଇ ଶୋକକୁ ଭଜ ଦଶଇ ଯାହା
ଫାଟଯାଉ ହୃଦସ୍ଥ ସୁମର ତାହା ଯେ । ୨୨ ।

ବାମଦେବ ପ୍ରତିଜ୍ଞା ଧନୁ ସଙ୍ଗତେ
ବହୁତ ନୃପ ପଥ ଆଶା ସହିତେ ଯେ ।
ବିନାଶ କଲି ତନୁ ବନ୍ଧୁରୁଥାଇ
ବିଧୁବେଦନୀ ପ୍ରିୟା ମୋର ନୁହଇ ଯେ । ୨୩ ।

---

(୧) ନବପଞ୍ଚ—ଚଉଦ ।

ଭଲ ସେ କଥା ଏବେ ଆସି ହୋଇଲା
ଭାବନୀ ସୁକୁମାରୀ ଭିନ୍ନ ହୋଇଲା ଯେ ।
ଭଗତବନ୍ଧୁ ରାମ ସୀତା ଲକ୍ଷ୍ମଣ
ଭଜଇ ଲୋକନାଥ ପାଦେ ଶରଣ ଯେ । ୧୪ ।

ମଘବାପଦ ଆଦ ଯେତେ ଉତ୍ସବ
ମଣଇ ଏଥି ଭାର କ କାର୍ଯ୍ୟ ହେବ ଯେ ।
ମନର ପ୍ରିୟା ବିନୁ ପୋଡ଼ୁ ଏ ପିଣ୍ଡ
ମାରିଗଲା ଶତ୍ରୁକୁ ନୋହୁ ଏ ଦଣ୍ଡ ଯେ । ୧୫ ।

ଜନକନୃପଜେମା ଜୀବନ ମୋର
ଜୀବନ ବିନୁ କମ୍ପା ଅଛୁ ଶରୀର ଯେ ।
ଜଳଜାସନ (୧) କେତେ ହେଉଛ ବାମ
ଯାହୁ ଜୀବନ ଜପୁଁ ଜାନକୀ ନାମ ଯେ । ୧୬ ।

ରମଣୀରତ୍ନ ଆରେ ଲାବଣ୍ୟନିଧି
ରଙ୍କ ହାଥରେ କାହିଁ ରତନ ମୁଦି ରେ ।
ରଖି ନ ଦେଲା ଧାତା ତେତେ ସୁଲଭ
ରୁଦ୍ର ଇନ୍ଦ୍ର ଚନ୍ଦ୍ରରେ ଯେଉଁ ଦୁର୍ଲଭ ରେ । ୧୭ ।

ଲକ୍ଷ ଲକ୍ଷ ଲୋକଙ୍କରେ ଅଲକ୍ଷ ଯେହୁ
ଲକ୍ଷି ପାରିବ କେ ତା ଚରିତ କହୁ ଯେ ।
ଲହୁଲାବୟସୀ ସେ ସୁନ୍ଦରୀ ସୀମା
ଲାବଣ୍ୟନିଧି ମୋ ଅଭିନ୍ନ ପ୍ରତିମା ଯେ । ୧୮ ।

ବସିଥାଇ ଯେ ମୋର କୋଳେ ଅବଳା
ବଦନେ କରୁ ଯାଇ ବଦନ ମେଳା ଯେ ।
ବେଢ଼ାଇ ହୃଦୟରେ ବାହୁବଲ୍ଲରୀ
ବଢ଼ାଇ ବେଳୁଁ ବେଳ ପ୍ରେମଲହରୀ ଯେ । ୧୯ ।

ଶ୍ୱାସ ପକାଇଣ ଯେ ବେଦନାତ୍ମକ
ସରସନେତ୍ରୁ ଗଳୁଅଛୁ ଲୋତକ ଯେ ।
ସେ ଦୁଃଖ ଦେଖି ସଉମିତ୍ରି ବୋଧିଲେ
ଶୁଣି ଅନୁଜ ବାଣୀ ଶାନ୍ତ ଲଭିଲେ ଯେ । ୨୦ ।

---

(୧) ଜଳଜାସନ—ବ୍ରହ୍ମା ।

ସତେହେଁ ପଶ୍ଚିମେ କ ଉଇଁବ ଧର୍ମ
ସଙ୍ଗ ହୋଇବନ୍ତି କ ରାମାରତନ ଯେ ।
ସତେହେଁ ନକ ଆଉ ହେବ ସେ କଥା
ସୁନ୍ଦରୀ ଦରଶନେ ହରିବ ବ୍ୟଥା ଯେ । ୩୧ ।

ସହ ନୁହଇ ଯାର କ୍ଷଣେ ଅଧୀର
ସେ ଯେ ହୋଇଲା ସିନ୍ଧୁ ପର୍ବତ ପାର ଯେ ।
ସହିଲ ଏଡ଼େ କଥା ଏ ପାପ-ଦେହ
ଶତ୍ରୁ ହୋଇଲା ତେଣୁ ଦୁଷ୍ଟ ବିରହ ଯେ । ୩୨ ।

ହୋଇଲା ଶେଷ କ୍ରମେ ବରଷାକାଳ
ହେଲେ ସୁଗ୍ରୀବ ଭେଟ ହୋଇଲେ ବଳ ଯେ ।
ହେଲେ ସମୁଦ୍ରେ ବନ୍ଧ ବାନ୍ଧି ତରିଲେ
ହେଲେ ରାବଣ ଆଦି ଦୈତ୍ୟ ମାରିଲେ ଯେ । ୩୩ ।

କ୍ଷିତିମଣ୍ଡନୀ ସୀତା ଯେଣ ଛଟକେ
କ୍ଷମେ ମିଳିଲେ ଆସି ନିଜ କଟକେ ଯେ ।
କ୍ଷମାସାଗର ରାମ ଲକ୍ଷ୍ମଣ ସୀତା
କ୍ଷମେ କହଇ ଲୋକନାଥ କବିତା ଯେ । ୩୪ ।

---

ଲେଖକ : ଲକ୍ଷ୍ମୀନାରାୟଣ

## ଚିଟାଉ ଚଉତିଶା

( ରାଗ—ଚକ୍ରକେଳି )

କମଳନୟନ ଦୂତିକି ବୁଝାଇ । ଖରେ ପଠିଆନ୍ତି ବନସ୍ତ ହୋଇ ।
ଗଜଗମନୀକୁ କହିବୁ ଯାଇଁ । ଘନ ତିମିରରେ ବୁଡ଼ିଛୁ ମୁହିଁ ।
ଅଳସ ଅପାଙ୍ଗୀ ହୃଦ-ସଂପଦ । ଚଳ (୧) ବହି ଘଟାଇଲା ବିଚ୍ଛେଦ ।
ଛଟକ ଗୃହିଣୀ ତାହାର ଯାହା । ଜୀବ ଯିବାଯାଏ ନ ଭୁଲେ ତାହା ।
ଝିନବସ୍ତ୍ର ପିନ୍ଧିଥିଲା ସୁବେଶୀ । ନବ କୁଚ ଉଚ ଥିଲା ଯେ ବସି ।

---

(୧) ଚଳ—କ୍ରୋଧ ପରବଶ ହୋଇ ।

ଟେକକର କଥା କହିଲ ଯେତେ । ଠିକେ କୃପା ବହି ନକହି ମୋତେ ।
ତମ୍ବୁରୁଧରଙ୍କ ଆଗ୍ରେ ଧାଇଁଲ । ଡାଳେ ମୋତେ ଦୟା ସେ ନବହିଲ ।
ଅଳପହାସୀ ପଲକ ପରସେ । ତରୁଚଢ଼ିଲେ ନ ଛୁଡ଼ଣ ଯାଏ ।
ଥିର ହୋଇ କରେ ବିବିଧ ଲୀଳା । ଦମ୍ଭ ଦିଏ ମୋତେ ସେ ନବବାଳା ।
ଧକା ଦେଲ ଦେଖି କାମ ଜଳକୁ । ନଗ୍ନ କଲ କମା ଏ ବେଳକୁ ।
ପାଲରେ ପକାଇ ବୃକ୍ଷେ ଚଢ଼ାଇ । ଫିଟା ମାନସରେ ମୂଳ କାଟଇ ।
ବନଜମୁଖୀର ଏମନ୍ତ ରୀତି । ଲାଗିଲ ନଜାଣି କରଣ ପ୍ରୀତି ।
ମଧୁର ବଚନେ ମନ ତୋଷିଲ । ଜବାଅଧରେ ଏମନ୍ତ ହସିଲ ।
ରଜନୀରେ ଆଇ ନିକୁଞ୍ଜବନେ । ଲଳିତା ଆଦି ସହଚରୀମାନେ ।
ବୋଲେ ଛୁଅଁ ନାହିଁ ଅଙ୍ଗ ମୋହର । ସୁଧା ନେବାର ମନ୍ତ୍ର ପରହର ।
ଶଶିମୁଖୀ ମୋତେ କଲ ନିର୍ଣ୍ଣ । ସହଚରୀ କହି ରାଧିକା ପାଣ ।
ହରଷେ ଦୃଷ୍ଟି ଗଲ ରାଧାପର । କ୍ଷମେ ଲକ୍ଷ୍ମୀନାରାୟଣ ପାମର ।

---

ଲେଖକ : ସୁଦର୍ଶନ

## ଅଲେଖ ଚଉତିଶା

କର ସୁଜ୍ଞଜନ ନାମ୍ କୀର୍ତ୍ତନ
କ୍ଷଣେ ନ ଛାଡ଼ିବୁ ଗୁରୁ ବଚନ,
ଗଳାରେ ରୁ ହାର କରିବୁ ନେଇ
ଘଟସ୍ପୃହେ ଜପ ଅଲେଖ ଭୁଇଁ ।
ମନ ହୋ, ଉଦେ ଅସ୍ତ ହେଉଛି,
ଚଉଦବ୍ରହ୍ମାଣ୍ଡ ପୁରିରହୁଛି··· ।୧।

ଛନକା ନ ହୋଇ ନଛାଡ଼ କ୍ଷଣେ
ଯେଉଁ ସ୍ୱାମୀ ନାମ ଗୋଷ୍ଠି ଭଜନେ,
ଝାଡର ଭିତରେ ମୃଜ ବସିଣ
ନିଷ୍ଠଲେ ଜପନ୍ତ ଅରୂପ ବ୍ରହ୍ମ ।
ମନ ହୋ, ଟାଣେ ଧରିଣ ଥିବୁ,
ଠୂଳେ ମାୟାକୁ ରୁ ପ୍ରତେ ନ ଯିବୁ··· ।୨।

ତୋଳାର ନିକଟେ ଅଛନ୍ତି ହରି
ତାଲେହେଁ ନ ଭୁଲ ଭ୍ରମ ବସ୍ତୁର,
ଅଣାକାର ତାର ଆକାର ନାହିଁ
ତନପୁର ଯାର ତୁମେ ଅଛଇ ।
ମନ ହୋ, ଅବ କରଣ ଚନ୍ଦ୍ର
ଦୁର୍ବୁଦ୍ଧି ଘୋଟିବ ହେଲେ ଅଜ୍ଞାନ··· । ୩ ।

ଧୀରେ ଧର ମନ ସ୍ଥିରରେ ଦେଖ
ନିର୍ଗୁଣ ଅଟଇ ସେ ପୁରଯାକ,
ପରମବ୍ରହ୍ମଙ୍କୁ ପ୍ରୀତରେ ପାଇ
ଫରହର ଭେଖ ବୁଲୁ ଅଛଇ ।
ମନ ହୋ, ବୃଦ୍ଧ ସ୍ୱାମୀ ସ୍ୱରୂପ
ଭେଟିଲେ ପାଇବୁ ପରମ ସୁଖ ·· । ୪ ।

ମହାମହିମା ସେ ଅଲେଖ ସ୍ୱାମୀ
ଯା ନାମ ଭଜ ନ ପାବନ୍ତି ମୂନ,
ସ୍ୱଅଲୀନାଛନ୍ତି ତହିଁରେ ପୂର
ଲଗିଅଛୁ ନୃତ୍ୟ ଶ୍ରୀଗୁରୁ ବୋଲି ।
ମନ ହୋ, ବଟବୃକ୍ଷ ମୂଳରେ
ସର୍ବ ଭକ୍ତ ପୂରଛନ୍ତି ସେଠାରେ ·· । ୫ ।

ଶିବ-ସନକାଦ ଜନକ ଯୋଗୀ
ଶ୍ରୀକୃଷ୍ଣ ଅଛନ୍ତି ସେ ବଟ ଜଗି,
ହାଟ ସ୍ଥଳ ନାମ ଅବନା ଭୂଇଁ
ହାଟ ତଳେ ଦେବଦେବୀ ଅଛଇ ।
ମନ ହୋ, କ୍ଷମାସାଗର ପାଦ
କ୍ଷମାକର ସୁଦର୍ଶନ ଅପ୍ରାଧ··· । ୬ ।

ଲେଖକ : ସୁଦର୍ଶନ

# ଅଣାକାର ଓଲଟ ଚଉତିଶା

ଛମାନଧ୍ୱ ତାଙ୍କୁ ଦୟା କରନ୍ତ
ହୃଦପଦ୍ମେ ତାର ନଥାଇ ଖିଡ଼ । ପଦ ।
ଶୂରଗଣେ ତାଙ୍କୁ ଦେଖିଲେ ଡର
ସାରସ୍ୱତ ବ୍ରହ୍ମ ତା'ଠାରେ ପୁର ।
ମନ ହୋ, ଶୂନ୍ୟ ଅଟେ ସରୂପ
ବଟ ମୂଳେ ଲୀଳା ଅରୂପ ରୂପ । ୧ ।

ଲଗିଅଛୁ ହାଟ ସେ ବ୍ରହ୍ମପୁର
ରାମକୃଷ୍ଣ ତହିଁ ହେଲେ ଦୁଆର ।
ଜଗନ୍ନାଥ ଶିବ ଯେତେକ ଦେବ
ମନ୍ତ୍ରମାଙ୍କ ଆଜ୍ଞା ତଳରେ ଥିବ ।
ମନ ହୋ, ଭଜ ଅଲେଖ ବ୍ରହ୍ମ
ଷୀର ବଧୂ ଦାନା ହଡ଼େ ସେ ସ୍ଥାନ । ୨ ।

ଫନ୍ଦା କର ତହିଁ ଶ୍ରୀଗୁରୁ ନାମ
ପରମପୁରୁଷେ ମାଗ ଶରଣ ।
ନରଖିବେ ଯେବେ ସେ ପ୍ରଭୁ ତୋତେ
ଧରି ବାନ୍ଧିନେବେ ଯମର ଦୂତେ ।
ମନ ହୋ, ଦୃଢ଼େ କର ଦର୍ଶନ
ଅସ୍ଥି କରି ଭଜ ଶ୍ରୀଗୁରୁ ନାମ । ୩ ।

ଢଳାଙ୍କେ ମାୟାରେ ନପଡ଼ ଭୂଲି
ଅଣାକାରରୂପ ଅରୂପ ବୋଲି ।
ତାଲେଙ୍କେ ନାମକୁ ତୁ କର ଫନ୍ଦା
ତୋଳା ଦୁଇ ପରେ ସକଳ ଧନ୍ଦା ।
ମନ ହୋ, ଠିକ କରିଣ ହେଜ
ଝିକଳ କଥାକୁ ଚଉରେ ଖୋଜ । ୪ ।

ନିସ୍ତରିବୁ ଯେବେ ଭବସାଗରୁ
ଝାଡ଼ର ଭିତରୁ କର୍ପାଇ ଫେରୁ ।
ଯେଉଁ ନାମ ଜପ କରନ୍ତି ମୁନି
ଛନକା ନ ହୋଇ ଦେଖ ତୁ ଧୂନି ।
ମନ ହୋ, ଚନ୍ଦ୍ର ସୂର୍ଯ୍ୟ (ତଦ୍ବି) ବନ୍ଦୀ
ଓଁକାରୁ ଶବଦ ଆସୁଛି ଭେଦ । ୫ ।

ଘଟରେ ଚୋହର ପୂରିଅଛନ୍ତି
ଗୁରୁଙ୍କ ସୁମର ନକର ଛିଡ଼ ।
ଝିଲ ସଂସାରରୁ ନେବେ ତାରିଣ
କାଟି ରହିଥିବ କାଳେ ଯୁଟେଣ ।
ମନ ହୋ, କାଳଦଣ୍ଡ ନୋହିବ
କହେ ସୁଦର୍ଶନ ଶରଣ ଥିବ । ୬ ।

---

ଲେଖକ : ସୋମନାଥ ସିଂହ ଜଗଦ୍ଦେବ

## ସୁନ୍ଦରୀ ଚଉତିଶା

କୋମଳାଙ୍ଗୀ କର ଧରି ବସି ହସି କହୁଛନ୍ତି ନଟନାଗର
କମଳମୁଖୀ ରେ ମୁଁ ତୋର ଅଧୀନ ନ ଧରିବୁ ମନେ ଅନ୍ତର
ସୁନ୍ଦରୀ, କି କହିବା ଆଉ ଅଧିକ,
କମଳ ଯେସନ ବିକଶିତ ହୋଏ ଦେଖି କରି ଗ୍ରୀଷ୍ମାନାୟକ । ୧ ।

ଖଞ୍ଜନନେତ୍ରୀ ଅନ୍ତର ନ କରିବୁ ମୋର ଜଣାଣ ଅନୁକ୍ଷଣି
କ୍ଷିନ୍ନହୃଦୟ ରେ ମୁଖେ ଦେଲେ ବଂଶୀ, ଡାକଇ ରାଧା ରାଧା ପୁଣି
ସୁନ୍ଦରୀ, ଖଟି ମୁଁ ଅଛୁ ଅନୁବ୍ରତେ,
କ୍ଷିତିମଣ୍ଡଳ ରେ କ୍ଷଣେହେଁ ବିମନ ନକରିବୁଟି ଆଉ ମୋତେ । ୨ ।

ଗଜଗତି ରଙ୍ଗେ ରସାଉଥାଉ ରେ ଧରି କସାଦନ୍ତ ପଲଙ୍କେ
ଗୁଣମଣି ଗୁଣ ଭାଳୁ ନଶିଦନ ନସରେ ଯାହା ଗର୍ବ ବାଙ୍କେ,
ସୁନ୍ଦରୀ, ଗୁମାନେ ନ କହୁ ତୁ କଥା,
ଗତ କଥାମାନ ଦୂର କରିଦେଇ କର୍ପାଇ ପୋତଦେଉ ମଥା । ୩ ।

ଘନଜଘନା ରେ ଘଡ଼ିଏ ପାଶରେ ଅନ୍ତର ହେଲେ ଯୁଗପରି
ଘୋଷୁଥାଏ ବସି ପ୍ରୀତି ଅନୁକ୍ଷଣେ ପ୍ରୀତିବନ୍ତ୍ରିଲା ସନ୍ଧିଚଣି ।
ସୁନ୍ଦରି, ଘର କରେ କୁଞ୍ଜବନରେ,
ଘାରୁଥାଏ ବସି କୁରଙ୍ଗୀ ପରାୟେ କେଳିକଦମ୍ବର ମୂଳରେ । ୪ ।

ଉଚଉରଜାରେ ଅନୁରାଗ ପାଇଁ ହୋଉଥାଏ ମୁଇଁ ଉଷତ
ଉରଙ୍କେ ଲଗାଇ ମୁଖେ ଚୁମ୍ବ ଦେଇ ପୂରାଉଥାଉ ମନୋରଥ ।
ସୁନ୍ଦରି, ଉଛନ୍ନ ନକର ଏଥର,
ଉଜାଗରେ ବସିଆଛ ମନ୍ଦାଳସୀ ଯେନ ମଦନ ପ୍ରୀତିକର । ୫ ।

ଚମ୍ପାବରନାରେ ବରଜ ମଣ୍ଡନା ଚତୁରୀମାନଙ୍କ ସିଂହାଣି
ଚମକାଇ ଅଙ୍ଗ ଟେଙ୍ଗ ଭିଡ଼ୁଥାଅ ପାସୋର ଦେଲୁ ଏବା ପୁଣି ।
ସୁନ୍ଦରି, ଚଞ୍ଚଳ ହୋଇ ଅଚଞ୍ଚଳ
ଚଞ୍ଚଳ ଇକ୍ଷଣୀ ଘୁରୁ ସୁଲକ୍ଷଣୀ ନଦଅ ମୁଖରେ ଅଞ୍ଚଳ । ୬ ।

ଛଇଲମଣି ଯୁବତୀ-ଶିରୋମଣି ରମଣୀରତନ ସୁଶୀଳା,
ଛଦ୍ମ ନଧର ଚନ୍ଦ୍ରବଦନା ମୋ କଣ୍ଠର ମରକତମାଳା ।
ସୁନ୍ଦରି, ଛଡ଼ରସେ ଯାକୁ ଭୁଞ୍ଜାଇ,
ଛଳ କରିବାର କାହିଁ ଅଛୁ ଶୁଣା ବର୍ତ୍ତିର ଚଢେ଼ ପ୍ରାଣସହି । ୭ ।

ଜବାଅଧରୀ ରେ ଜଗତ ଜାଣନ୍ତି ଏହୁପଣି ତ ବେନି ତନୁ,
ଜାଣ ଦୁଷ୍କର ଘରେ ତୁ ଉତ୍ପତ୍ତି-ମୁଁ ହେଲି ଯଶୋଦାଙ୍କ ସୂନୁ ।
ସୁନ୍ଦରି, ଜଡ଼ ପରି କର୍ଣ୍ଣ ନ କର,
ଜୀବନ ଥିଲେ କି ଛାଡ଼ି ରହିଇରେ ରମଣୀରତନ ମୋହର । ୮ ।

ଝଡ଼ାଇ ନଦଅ ଅଙ୍ଗକୁ ମୋହର ଝସକେତନର ହସ୍ତରେ
ଝିମିଟେ ଯାକୁ ନ ଛାଡ଼ୁଥାଉ ପାଶୁ ଭସାଇ ଦେଉ ସରିତରେ ।
ସୁନ୍ଦରି, ଝଗଡ଼ା ନକର ମୋଠାରେ,
ଝାଡ଼େ ଯେନ ଭୁଲୁଥାଉ ପ୍ରାଣବନ୍ଧୁ ମୋତେ ଯେନଣ ସଙ୍ଗତରେ । ୯ ।

ନସ୍ମମ କରିଛୁ କୁଳଦୀପ ତୁହି ପ୍ରଥମ ରତିରଙ୍ଗ କାଳେ
ନବଣୀନଧରେ ବାଧ କରିଅଛୁ ତୁ ତ ନରହୁଁ ଅଛୁ ତଳେ ।
ସୁନ୍ଦରି, ନଟବରେ ରାଧା ପୀରତି,
ନିଗିଗଳନ ଆଉଟିଣ ଥିବା ସୁବର୍ଣ୍ଣ ସିନା ଫୁଂକାମତି । ୧୦ ।

ଟଳିଯାଉଅଛି ଅମୀୟବଚନ ବହୁତ ଦିନ ହୋଇନାହିଁ
ଟାହି କରିବେ ଲୋକେ ଏବେ ଶୁଣିଲେ ବିସ୍ତର ଚଣ୍ଡେ ଶଶିମୁଖୀ ।
ସୁନ୍ଦରୀ, ଟେକ ମୋତେ ଟୋପେ ପକାଇ
ଟିକା କର ମଣି ଶିରେ ବହୁଥିଲେ ତାକୁ କି ଭଗ୍ନ କରିଦେଇ । ୧୧ ।

ଠାକୁରଙ୍କ ବାଣୀ ଶୁଣି ଠାକୁରାଣୀ ଆନନ୍ଦେ ହୋଇ ଜରଜର
ଠକପଣ କରି କେତେ କହୁଅଛ କମଳମୁଖରେ ତୁମ୍ଭର ।
ନାଗର, ଠଣ ସୁନ୍ଦର ଗୋପିନାଥ,
ଠିକ କରି ଏହା ଗୀତରେ ଭଣିଲେ ନୃପତିବର ସୋମନାଥ । ୧୨ ।

ଡକାଇ ବଂଶୀରେ ଆମ୍ଭ ପଞ୍ଚ ମନ ତୁମ୍ଭ ଚରଣେ ଠକାଇଲ
ଡରାଇଲେ ଶାଶୁ ନଣନ୍ଦ ଆମ୍ଭଙ୍କୁ ନଗରଙ୍ଗିଲୁ ସେ ଚୋର ବୋଲ ।
ନାଗର, ଢେରିଥାଉ କଣ୍ଠପଥକୁ,
ଢଙ୍ଗର ପୁରୁଷ ଭ୍ରମରମତିରେ କହୁଅଛ କେତେ ଆମ୍ଭଙ୍କୁ । ୧୩ ।

ତମାଳ ପରି ଲାଗୁଛ ତୁମ୍ଭ କଥା କହିଲେ ଯେତେ ଦୂର ସରି
ତାଳିଲେ ବୃନ୍ଦାବତୀର କେତେ ସୁଖ କରିଥିଲେ ମନହୁଆଳି ।
ନାଗର, ତମ କହୁଥାନ୍ତି ପୁରୁଷ,
ତୋ କାନ୍ତି ଅମୃତ ପ୍ରାନ୍ତେ ହୋଏ ଚିତ୍ତ ନମିଲେ କାଳକୂଟ ବିଷ । ୧୪ ।

ଆପ୍ଲୁତ ନରହେ ଭୁଲିଯାଏ ଚିତ୍ତ ଶୁଣିଲେ ମଧୁର ବଚନ
ଅରକ୍ଷ ହୁଅଇ ପଛକୁ ଖାଲିଲେ ନସରୁଥାଏ ଫଣିଧନ ।
ନାଗର, ଅସ୍ପ ଦଂଶିଲା ପ୍ରାପ୍ତ ହୋଇ,
ଆଗଧି ଆଗଧି କାହିଁରେ ନୁହଇ ଫିଟିଲେ ଶୁକପରି ହୋଇ । ୧୫ ।

ତାମସରେ ପ୍ରୀତି କରିଥାଅ ସିନା ଚହ୍ଲା ନଯାଏ କି ସେ କଥା
ତରଳ ହୋଇ ପ୍ରଥମେ ମଞ୍ଜୁ ବାଣୀ ଶୁଣି ପ୍ରାନ୍ତେ ଚଳୁ ବିଧାତା ।
ନାଗର, ତୁମ୍ଭେ ଜଗତର ମୋହନ,
ତଥାପି ଅବଳା ବଳିଯାଉଥାଉ ନ କର କପାଁ ସନମାନ । ୧୬ ।

ଥଏ ନୋହେ ଚିତ୍ତ ରମ୍ଭାପର୍ଯ୍ୟନ୍ତ କରାଇ ଦିଅ ମୋହିବାରେ
ଥାବର ଜଙ୍ଗମ ବିମ୍ବ ହୋଇଯାନ୍ତି ତୁମ୍ଭ ବିଷ୍ଣୁକୂଟ ମାୟାରେ ।
ମୋହନ, ଥଏ କାହୁଁ ହେବ ଯୁବତୀ,
ଥିତ ନୋହି ସିନା ବୋଲି କହୁଅଛ କରିଥାଅ ଯେତେ ପୀରତି ।୧୭।

ଦୟାଳୁ ସଜାଣୁଁ ଦୟାନିଧି ନାମ ବୋଲି କରି ଆମ୍ଭେ ଜାଣିଚୁ,
ଦରିଦ୍ରନିଧି ଅବଧି କରିଦେଅ ଏହା କାହିଁ କର୍ଣ୍ଣେ ଶୁଣିଚୁ ।
ନାଗର, ଦରେ ହୋଇ ସିନା କାତର,
ଦହୁଥାଉ ଅଙ୍ଗ କର ନାନା ରଙ୍ଗ ବସ୍ତ୍ର ନଜର ଚତୁର । ୧୮ ।

ଧରିଥାଉ ସ୍ଥିରେ ବଚନ ତୁମ୍ଭର ଅନ୍ତର ନ କରୁ ଚତୁରେ
ଧିର କରିଦେଅ ନବନାଗର ହେ ଘୋଷୁଥାଉ ତୁମ୍ଭ ନାମରେ ।
ନାଗର, ଧରମ ତୁମ୍ଭଠାରେ ନାହିଁ,
ଧୀରେ ବୋଧି ମନ ଅଧୀର କର ଯେ ଆମ୍ଭ ନାମରେ ବଂଶୀ ବାଇ । ୧୯ ।

ନବଘନଙ୍କୁ ଚାତକ ଆଶାକରି ଜଳ ଯେମନ୍ତେ ନ ପାଇଲା,
ନବୀନ ସୁନ୍ଦର ଆଶ୍ରେକଲାଠାରେ ଦୁଃଖ ସେହିପରି ହୋଇଲା ।
ନାଗର, ନ ଇଚ୍ଛି ଥାନ୍ତୁ ଯେବେ ଆମ୍ଭେ,
ନୋହିଲେ ଆମ୍ଭଙ୍କୁ ଏମନ୍ତ ପରି କି କରି ଯେ ଥାନ୍ତ ଏବେ ତୁମ୍ଭେ । ୨୦ ।

ପରମାଦରେ ପଶିଲୁ ଅପବାଦ କରି ନେଇଥାଉ ପଛକୁ,
ପର ପୀରତି ଜାଣିଥିଲେ ଏମନ୍ତ ନ ବୁଡନ୍ତା ଆମ୍ଭ ଚତୁଙ୍କୁ ।
ନାଗର, ପାର ନ ଗଲା ଗୁରୁବାଣୀ,
ପୁରନ୍ଦର ପରି ପ୍ରଭୁ ସେବା କରି ଏବେ ହୋଇଛୁ ଦୋଷୀରୁଣୀ । ୨୧ ।

ଫଣୀଧରଶିପୁ ଏହା କରିଅଛୁ କହିଲେ ତୁମ୍ଭଙ୍କୁଁ କି ହେବ,
ଫାନ୍ଦେ ପକାଇଲେ ଏମନ୍ତି କରିବ ବସ୍ତ୍ରହରି ଥିଲ ଦଇବ ।
ନାଗର, ଫନ୍ଦା କରିଥିଲୁ ତୁମ୍ଭଙ୍କୁ,
ଫାଡ଼ି ହେଲନି ଅଞ୍ଚଳ ପରି ଏବେ କହୁଛ ମନ ପାଇବାକୁ । ୨୨ ।

ବସି ଭାଳୁଥାଉ ପୂର୍ବକଥାମାନ ତୁମ୍ଭର ଏମନ୍ତ ସ୍ୱଭାବ,
ବଳିକି ଦାନ ମାଗିଲ ସତ୍ୟ ଛଳେ ଦେଇ ପାଇଲ ପରାଭବ ।
ନାଗର, ବରଜକିଶୋର ବୋଲାଇ,
ବାଣୀବଲ୍ଲଭ ଜଗତରେ ବୋଲାନ୍ତି ମିଛେ ଦେଉଥାଅ ଭୁଲାଇ । ୨୩ ।

ଭୂପତିନନ୍ଦିନୀ କଷ୍ଟଭାଷା ଶୁଣି ରଙ୍ଗ ଅଧରେ ମନ୍ଦହାସ,
ଭଲ ନାହିଁ ସଖି ପ୍ରୀତିକୁନ୍ଦନା ରେ ଶୁଣି ଚଉ ହୁଏ ବିରସ ।
ସୁନ୍ଦରୀ, ଭାବନା ମୋର ତୋର ନାମ,
ଭଣେ ସୋମନାଥ ସିଂହ ବୀରବର ଶ୍ରୀକୃଷ୍ଣ ପାଦେ କରି ଧ୍ୟାନ । ୨୪ ।

ମହୀମଣ୍ଡନା ମହୀଙ୍କ ଗୃହିଣୀ ରେ ଚନ୍ଦ୍ର-କୁମୁଦ କି ଅନ୍ତର,
ମହାଦେବ କି ପାର୍ବତୀ ଭିନ୍ନାଭିନ୍ନ ତୋହ ମୋହ ସେହି ପ୍ରକାର ।
ସୁନ୍ଦରୀ, ମର୍ତ୍ତ୍ୟସ୍ୱର୍ଗରେ ଏହିମତ,
ମହୀରେ ପାତକୀମାନେ ତରିଯିବେ ଧରିଲକ୍ଷ୍ମୀ ନାମ-ପଥ । ୧୫ ।

ଜୀବନ ଯିବ ନାହିଁ ପାସୋରି ସଖି ଏମନ୍ତ ହୋଇଛୁ ଘଟଣ,
ଯହିଁ ତହିଁ ଥିଲେ ଭିନ୍ନ ନୋହିବ ରେ ଝୀନବସନା ସ୍ନେହମାନ ।
ସୁନ୍ଦରୀ, ଜବାଧରୀ ଆନ ନ ଧର,
ଯାବତଚନ୍ଦ୍ରରେ ଭିନ୍ନ କେ କରିବ ତୁ କପାଁ ଧରିଛୁ ଅନ୍ତର । ୧୬ ।

ରହିଲୁନି ଏହିପରି ଯୁଗେ ଯୁଗେ ଭିନ୍ନ କଲେ କିଏ ଲୁଚିବ,
ରାଧା ପ୍ରୀତି ସିଦ୍ଧି କରିଅଛୁ ବିଧି ଏହା କେ ଅନ୍ୟଥା କରିବ ।
ସୁନ୍ଦରୀ, ରବିତଳରେ ଏହି କଥା,
ରହିଗଲାନି ରେ କରିନ୍ଦ୍ରଗମନା ଟେକି ନ ଗୃହଁ କପାଁ ମଥା । ୧୭ ।

ଲଭେ ମାତ୍ର ଜାଣ କେ କରିବ ଆନ ଯେ ଅଛନ୍ତି ମହୀତଳରେ,
ଲାବଣ୍ୟନିଧି ରେ ନଧର ବିମନ ଏ କି ଉଚିତ ତୋରଠାରେ ।
ସୁନ୍ଦରୀ, ନଗରେ ନ ଜାଣନ୍ତୁ ପୁଣି,
ଲଭିଲି ପୀରତି ଅନ୍ତର ହେଲେଟି ହସିବେ ଜାଣ ସପତ୍ନୀ । ୧୮ ।

ବସି ଖେଳୁଥିଲେ ଯେତେ ଗୁଣମାନ କହିଲେ ଛେଦେ ନ ସରିବ,
ବ୍ରଜସୁନ୍ଦରୀ ଅବିବେକୀ ହୋଇଲେ ଏ ଦୋଷ କାହାକୁ ହୋଇବ ।
ସୁନ୍ଦରୀ, ବରଜୀ ନକର ଆମ୍ଭଙ୍କୁ,
ବାରଣ କଲେ କି ନୋହିବଟି କିଛି କହୁଅଛୁ ମୁହିଁ ତୁମ୍ଭଙ୍କୁ । ୧୯ ।

କ୍ଷୀରଫୁଲ ଗନ୍ଧ ଅଟେ ମୁଁ ତୋହର କର୍ପାଇ ହୋଇଛୁ ବିମୁଖ,
ସହନପାରିବୁ ଏବେ ରେ ନାଗରି ମୁଁ ହେବି କାହାର ରୂ ଲେଖ ।
ସୁନ୍ଦରୀ, ସାରସଗତି ମୋ ଜୀବନ,
ଶଶିକୁ ଯେସନେ ଚନ୍ଦ୍ର ବହିଛନ୍ତି ସେପରି ମୁହିଁ ତୋର ଜାଣ । ୨୦ ।

ସରିତରେ ଖସିଗଲେ ମୀନନେତ୍ରି, ଭଲ କି ହୋଇବ ଏ କଥା,
ଶୂରମୋହନ ରେ ଊଣା ବୁଦ୍ଧି ଏତେ ଶୁଣି ମୁଁ ପାଉଅଛୁ ବ୍ୟଥା ।
ସୁନ୍ଦରୀ, ସୁରତି ଅଟେ ପରମାଦ,
ସରି ସରି କରି ବନ୍ଧଦେଲେ ବନ୍ଧୁ ବସ୍ତ୍ରରୁ ନୋହିବ ଆପଦ । ୨୧ ।

ସଦ୍‌ଭାବ କରି ରଖିଯାଇ ଯାହାକୁ ତାକୁ କି କରି ପରମାଦ,
ସୁରଙ୍ଗାଧରୀ ଧନମାନ ବିସ୍ମରି ଶଠେ କେତେ ଧରି ବିଷାଦ ।
ସୁନ୍ଦରୀ, ସାହସ ନଦିଅ ଛଡ଼ାଇ,
ସଞ୍ଜିବି ଯଦି ଯୋଗମୋହନା ରେ ନ ରହିବ ତୋର ବଢ଼ାଇ । ୩୨ ।

ହଟ ନକର ମୁଁ ଅଟଇ କାଙ୍କର ସବୁଦିନେ ଏହି ଭରସା,
ହରିଗହଣୀ ସେବା କରି ପାଇଛୁ ଏତେବ କଣ୍ଟିତେ ମତେ ରସା ।
ସୁନ୍ଦରୀ, ହରଷରେ ନୁହଁ ବିରସ,
ହର ପରି ପ୍ରଭୁ ରହି ନ ପାରିଲେ ତେଣୁ ବୋଲନ୍ତି ଦିଗବାସ । ୩୩ ।

କ୍ଷଣେ କୃଷ୍ଣବାଣୀ ଶୁଣିଣ ରମଣୀ ଅନେକ ଆନନ୍ଦ ହୋଇଲେ,
କ୍ଷୀରପାନ ପାଇକରି ଯେସନ୍ତେ ବତ୍ସା ତେମନ୍ତ ହୋଇଣ ରହିଲେ ।
ସୁଜନେ, କ୍ଷମା ମାଗଇ ଗୋପୀନାଥ
କ୍ଷିତିପତି ସୋମନାଥ ନୃପ କହେ ମନାଇ ନେଲେ ବନ୍ଦି ଚିତ୍ତ । ୩୪ ।

ଲେଖକ : ଶ୍ୟାମଘନ

# ମେଷଯୁଦ୍ଧ ଚଉତିଶା

କୃଷ୍ଣଗୁଣ ଗୁଣି ସବ ଆଭୀର (୧) ନାଗରୀ
କାମଶରେ ଦହୁ ଦହୁ କୃଶ କୃଶୋଦରୀ,
କୃଷ୍ଣକେଳିକଳା ବାଳା ଚତୋଇ (୨) ମନରେ
କରନ୍ତି ରୋଦନ ସେନ୍ତୁ ବର୍ଷି ଝରନ୍ତିରେ । ୧ ।

କ୍ଷଣକ ହିଁ ଲକ୍ଷ ଲକ୍ଷ ଯୁଗ ପ୍ରାୟ ମଣି
କ୍ଷୋଭ ଲଭୁଥାନ୍ତି ଏକା କୃଷ୍ଣଗୁଣ ଗୁଣି,
କ୍ଷଣଦାକର (୩) କିରଣ ଲାଗେ ଅଙ୍ଗରେ,
କ୍ଷୀଣ ହୋଏ କମଳିନୀ ହେମନ୍ତ ପ୍ରକାରେ । ୨ ।

ଖେଦ-ଜଳଧିରେ (୪) ଧୀରେ ଧୀରଗାମିମାନେ
ଖରେ ଭାସିଯାଉଥିଲେ ଅନାଥ ଯେସନେ,
କ୍ଷଣକେ ଚେତନା ଅଙ୍ଗେ ଲଭି ଗୁଣବାଳା
ଖଗପତି ନାଥ ନାମ କରି ମାତ୍ର ଭୁଲିଲା । ୩ ।

ହରିଣନୟନୀଙ୍କର ଯେତେକ ହରଷ
ହରିଲା ହରି ବିହୀନେ ହରତପ ନାଶ,
ହରିଣ ବିହୀନେ ହରିଣାଙ୍କମୁଖୀମାନ (୬)
ହାହା ପ୍ରାଣନାଥ ବୋଲି କରନ୍ତି ରୋଦନ । ୪ ।

ଗୁରୁବିରହେ ବିଧୁର ସକଳ କାମିନୀ
ଗରବ ହରିଲା ଗାଢ଼େ ସଚନ୍ଦ୍ର (୭) ଯାମିନୀ,
ଗରୁ ଗୁରୁହୀନ ଦୀନ ବଦନ ହୋଇଲ
ଗଜମୋଢହାର ମହୀଧର (୮) ତା ଭଜିଲ । ୫ ।

---

(୧) ଆଭୀର — ଗୋପାଳ । (୨) ଚତ୍ରେଇ — ସ୍ମରଣ କରି । (୩) କ୍ଷଣଦା — ରାତ୍ରି ।
(୪) କ୍ଷଣଦାକର—ଚନ୍ଦ୍ର । (୫) ଖେଦଜଳଧି — ଦୁଃଖର ସାଗର । (୬) ହରିଣ — ବିଷ୍ଣୁ ।
ହରିଣାଙ୍କ—ଚନ୍ଦ୍ର । (୭) ସଚନ୍ଦ୍ର — ଚନ୍ଦ୍ରଯୁକ୍ତ । (୮) ମହୀଧର—ପର୍ବତ ।

ସୁଗନ୍ଧ ମନ୍ଦ ଶୀତଳ ଅନିଳ (୧) ଅନଳ
ସମ ସମାନ୍ତକ ଶରେ ହୁଅନ୍ତି ଆକୁଳ,
ସୁମନ୍ତ୍ର ମଲ୍ଲିଗନ୍ଧ ସଜନୀ ସକଳ
ସବିଷକୁଣ୍ଡଳୀ (୨) ମଣେ ମୃଣାଳ (୩) ସକଳ । ୬ ।

ଘନ ଘନ କମଳନୟନୁ ବହେ ନୀର
ଘୋରତର ମଣନ୍ତି ସୁଶୀତଳ ସମୀର,
ଘେନି କରେ ବାଣଗଣ ବିନ୍ଧଇ ମଦନ
ଘଡ଼ିକ ଯୁଗ ଗଣିଲ ଗହନ (୪) ମଦନ । ୭ ।

ସୁନ୍ଦର ଗଣ୍ଡମଣ୍ଡଳ ପାଣ୍ଡୁର ହୋଇଲା
ସୁମନ କୋଦଣ୍ଡ କାଣ୍ଡ ପ୍ରଚଣ୍ଡେ ମାଇଲା,
ସୁବର୍ଣ୍ଣ ସୁବର୍ଣ୍ଣ ବର୍ଣ୍ଣ ବିବର୍ଣ୍ଣ ହୋଇଲା
ସରୋଜ ନୟନମାନ ନୀରରେ ପୂରିଲା । ୮ ।

ନିରତେ ଲୋତକ ନୀର ଧାରରେ ପଡ଼ନ୍ତି
ନିଶାକାଳ କାଳ ସମ କଳ୍ପ ମଣନ୍ତି,
ନକରନ୍ତି ଅଶନ ସେ ଗଜେନ୍ଦ୍ରଗମନୀ
ନାକ ନାଗ ନରପୁର ତ୍ରିଲୋକମୋହିନୀ । ୯ ।

ଶାତକୁମ୍ଭ (୫) କୁମ୍ଭସ୍ତନୀ ମଦନେ ବିମନା
ଶ୍ୟାମରୂପ ଚିନ୍ତେ·ଚିନ୍ତା କରି ଗୋପାଙ୍ଗନା,
ସୁକବର (୬) ଖରତର ପ୍ରାୟକ ସେ ମଣି
ଶୋକରେ ବିହୀନଭୂଷା ସକଳ ତରୁଣୀ । ୧୦ ।

ଚନ୍ଦନ ଚମ୍ପକ ନ କରନ୍ତି ଖଳଦେଶେ
ଚେତନା ହାରନ୍ତି ଚଉ ଦେଇ ପୂର୍ବରସେ,
ଚନ୍ଦ୍ରହାସ (୭) ଚନ୍ଦ୍ରହାସ ସମାନ ମଣିଲେ
ଚାମୀକର-କଣ୍ଠମୁଖୀ (୮) ଦୁଃଖିତା ହୋଇଲେ । ୧୧ ।

---

(୧) ଅନିଳ—ପବନ । (୨) ସବିଷ କୁଣ୍ଡଳୀ—ବିଷଯୁକ୍ତ ସର୍ପ । (୩) ମୃଣାଳ—ପଦ୍ମନାଡ଼ ।
(୪) ଗହନ—ବନ । (୫) ଶାତକୁମ୍ଭ—ସୁବର୍ଣ୍ଣ । (୬) ସୁକବର—ଉତ୍ତମ କବରୀ ବା ଜୁଡ଼ା ।
(୭) ଚନ୍ଦ୍ରହାସ—ଖଡ୍ଗ, ରୂପା । (୮) ଚାମୀକର—ସୁବର୍ଣ୍ଣ ।

ବନମାଳୀ ବନମାଳାଧରରୂପ ଧ୍ୟାଇ
ବିକଳ ହୁଅନ୍ତି ବାଳା ମାଳା ଚନ୍ଦ୍ରା ବନ୍ଧୁ,
ବିମନା ହୋଇ ସୁମନେ ପ୍ରମଦାମଣ୍ଡଳ
ବନ୍ଧିଲେ ନାହିଁ ଶିରରେ ହୋଇଣ ଆକୁଳ । ୧୨ ।

ଛଇଳା ତାରତରଳନୟନୀ ରାଧିକା
କ୍ଷୋଭ ଲଭିଲା ବିଶେଷ ମଦନେ ଅଧିକା,
ଛନଛନ ମନ ହୋଇ କୁରଙ୍ଗଲୋଚନୀ
କ୍ଷିତିରେ ଶୟନ କରେ ମରାଳଗମନୀ । ୧୩ ।

ଲକ୍ଷ୍ୟ କରି ଲକ୍ଷ ଲକ୍ଷ ଶରକୁ ମଦନ
ଲାବଣ୍ୟନିଧି ରାଧାକୁ ବିନ୍ଧେ ଘନ ଘନ,
ଲୀନ କାମଜଳେ ମୀନ ସମ ମୀନନେତ୍ରୀ
ଲହୁଲିବପୁଷୀ ଦାହହେମ ସମଗାତ୍ରୀ । ୧୪ ।

ଜଳଜ ସଜଳଦଳ ମଣ୍ଡଳ ତଳ୍ପରେ (୧)
ସୁବର୍ତ୍ତାମଣିକ ସଖୀ ଶୁଆନ୍ତି ସତ୍ୱରେ,
ଜ୍ୱଳନ ଜାଳ ସମାନ ମଣଇ ତରୁଣୀ
ଯେସନ୍ତେ ଦାବ ତାପେ ଛନ୍ନ ଶଇଶବ ଏଣୀ । ୧୫ ।

ରଣରଣଙ୍କ (୨) ଦାରୁଣ ବାଣଗଣ ବାଜି
ରସବତୀ ଅଙ୍ଗନ ସର୍ବକୁ ଗାଢ଼େ ଭଜି,
ରଞ୍ଜି ନାହିଁ ଅଞ୍ଜନ ନୟନେ କଞ୍ଜମୁଖୀ
ରଙ୍ଗ ଅପାଙ୍ଗିନୀ ଯୋଗଭଙ୍ଗୀ ହୋଇ ଦୁଃଖୀ । ୧୬ ।

ଝଲକଇ ଅଙ୍ଗେ ଝଲ ଝଲ କାମଶର
ଝମ ଝମ ହୋଏ ଝସଦୃଶୀର ଶରୀର,
ଝର ଝର ଝର ସମ ଝରେ ନେତ୍ରନୀର
ଝୀନବେଣୀ କୃଶ ଝୁରି ଝୁରି ନିରନ୍ତର । ୧୭ ।

ସହିକରି କମ୍ପଗାଢ ଅଙ୍ଗକୁ ଅଙ୍ଗନା
ଜର୍ଗ କାଳ ହରନ୍ତି ସେ ହୋଇ ହରିମନା,
ଜୀବ ଯିବ ବୋଲି ଯେତେବେଳେ ସେ ଜାଣନ୍ତି
ଜୀବବନ୍ଧୁ ବନ୍ଧୁ ବୋଲି ଜୀବନ ରଖନ୍ତି । ୧୮ ।

---

(୧) ତଳ୍ପ—ଶଯ୍ୟା । (୨) ରଣରଣ—କନ୍ଦର୍ପ ।

ନଷ୍ଟପ୍ରୁ କଲେ ସକଳ କଳଙ୍କସଙ୍ଗତ
ନାଶିବଟି ପ୍ରାଣଗଣ ପଞ୍ଚବାଣ ଗତ,
ନେବା ରାଧିକାଙ୍କୁ ବୃନ୍ଦାବନକୁ ସଜନୀ
ନଯାଉ ଜୀବନ କୃଷ୍ଣ-ଚନ୍ଦ୍ରମାନ ଚହ୍ନି । ୧୯ ।

ମଉମାଉଙ୍ଗଗମନୀ ଏମନ୍ତ ବଚନ
ମୃଦରନେଣୀ ରାଧାଙ୍କୁ ଯେଣ ସର୍ବନାଶ,
ମଧୁର ମଧୁର ପନ୍ଥ ଯେଉଁ ବୃନ୍ଦାବନ
ମନ୍ଦ ମନ୍ଦ ହୋଇ ତହିଁ କଲେକ ଗମନ । ୨୦ ।

ଝହକ ସୁବିଟକଳ ପ୍ରସୂନ ଦେଖିଲେ
ଝାଣ ପଞ୍ଚବାଣ ବାଣ ଗଣେ ଛନ୍ନ ହେଲେ,
ଝେକ ବାସନ୍ତୀ ବାସନ୍ତ ସନ୍ତଥସନ୍ତ
ଝଲେ ଲକ୍ଷି କ୍ଷୀଣକୁକ୍ଷି ରାଧାର ଜୀବତ । ୨୧ ।

ଭଣନ ଭ୍ରମରଗଣ ଭ୍ରମଣ କରନ୍ତ
ଖ୍ରୀମରପୁ (୧) ଜୟଧ୍ୱନି ଦ୍ୱିକେ କ ପଢ଼ନ୍ତ,
ଭ୍ରମ ଭ୍ରମ ନଭଗାଣୀ ନେଣେ ଦେଖି ତାହା
ଭଙ୍ଗ ଅଙ୍ଗ ଶୋଷ୍କ ତାକୁ କଲ୍ପ ରଥନାହା । ୨୨ ।

ଠଣ ସୁବକୁଳ କୁଳ କୁଳଣ ସମାନେ
ଠଣେଗାଣୀମାନେ ଦେଖି ମଣେ ନିଜ ମନେ,
ଠାଠିକ ଚମ୍ପକ କଦମ୍ବକ ଲକ୍ଷି ବାଳା
ଠିକେ କାମଶର ତେଣୁ ପ୍ରାଣ ଆକୋଷିଲ । ୨୩ ।

ବିକଶିତ ନବ ନବ ମାଳକା ମାଳକା
ବିକଳ ହୋଇଲେ ଦେଖି ବାଳକା ଆଳକା,
ବିଶଦ ମୁକୁଳ କୁଳ ଚୂତ ମଞ୍ଜରିକା
ବିମଳ ଭ୍ରସଲ ଜାଲ (୨) ନିଣ୍ଟଲେ ଶୋଭିକା । ୨୪ ।

ତନ୍ତ ହେମ କାମପାନ କଙ୍କଣୀ ସଦୃଶ
ତୋଲେ ଦେଖି କର୍ଣ୍ଣିକାର ହୋଇଲେ ଅବଶ,
ତାଳମ୍ବ ମାଲୁର ଉଦୁମ୍ବର ସାର ବାର
ତରଇ ଦେଖି ନାରକେଳ କେଳଗାବର (୩) । ୨୫ ।

---

(୧) ଖ୍ରୀମରପୁ—ମହାଦେବଙ୍କ ଶତ୍ରୁ କନ୍ଦର୍ପ । (୨) ଭ୍ରସଳ ଜାଲ—ଭ୍ରମରସମୂହ ।
(୩) କେଳଥବର—କନ୍ଦର୍ପ ।

ଝୁଣ୍ଟି ଲବଙ୍ଗ ବଉଳ ବିରୋଧ କରଇ
ଫାଇ ଶୋକ ଅଶୋକ ସନ୍ନତେ ବିସ୍ତାରଇ,
ଫୁଲ୍ଲବାଣ ବାଣ ଶାଣ କି ନାଗ କେଶର
ଫୁରୁଣା ହେଲା ଦେଖି ସ୍ମରୁ କରଯାର । ୨୬ ।

ଥାଳେ ଦେଖିଲେ ସେ ବୃନ୍ଦାବନ ଶୋଭାମାନ
ଥଳଥଳ ହୋଇଲାନ ପଦ୍ମଜ ଜୀବନ,
ଥୋକଲେ ଗରଳ ଯେହ୍ନେ ଧାରଇ ଶରୀର
ଥଳନ୍ତି ତେସନ ହୋଇ ବଲ୍ଲବୀ ନିକର । ୨୭ ।

ପେଶଳ କେତକୀ ପାଖେ ଅଳି କଦମ୍ବକ
ପୁଷ୍ପେ ପୁନ୍ନେମଦଗନ୍ଧେ କି ଅସିତ (୧) ପତାକ ।
ପୁନାଗ କୁନ୍ଦ ସେବତୀ ଜାତୀ ଯୂଥି ପନ୍ତି,
ପନସ କପିତ୍ଥ କୁରୁବକ ଶୋଭାପାନ୍ତି । ୨୮ ।

ଏମନ୍ତ ସମସ୍ତେ ଶେଷ ହୋଇଲା ଦିବସ
ଅସ୍ତ ମହୀଧରଶିରେ ପ୍ରବେଶ ଦିନେଶ,
ଅନୁରାଗ ପ୍ରତୀଚୀ (୨) ନାରୀ ସଙ୍ଗେ ବନ୍ଧୁଛୁ,
ଅବା ପ୍ରାଚୀ ବିଚ୍ଛେଦେ ହୃଦୟ ଫାଟିଅଛୁ । ୨୦ ।

ନଭେ ଅରୁଣିତ ଘନ ରଥାଙ୍ଗ ବିଚ୍ଛେଦ,
ନିମୀଳିତ ହେଲେ ବେଗେ କମଳିନୀବୃନ୍ଦ ।
ନିମିଷକେ ବାରୁଣୀ ଲଭିଣ ସୂର ଅସ୍ତ
ନାଶଗଲା ସନ୍ଧ୍ୟା କ୍ରମେ ତମ ପ୍ରକାଶିତ । ୩୦ ।

ତରୁବରସମୂହ କି ଆବୃତ ହୋଇଲା
ତରୁଣୀ ପ୍ରଦୀପ ଲଭି ଧୂମ କି ଘୋଟିଲା
ତରଳ ହୋଇଣ ମର୍ମେ ତରୁଣୀରତନ
ତରୁଣ ସଙ୍କେତ ସ୍ଥାନେ କଲେକ ଗମନ । ୩୧ ।

---

(୧) ଅସିତ—ଧଳା । (୨) ପ୍ରତୀଚୀ—ପଶ୍ଚିମ ଦିଗ ।

ଧର ଅନୁରାଗ ପୁଣ ଧବଳ କରଣ
ଧୀରେ ପ୍ରାଚୀବଧୂକୁ ସେ କଲା ଆଲିଙ୍ଗନ ।
ଧ୍ୱସ୍ତ କଲା ଉରୁମୋହ ମାର ତମ କଣ୍ଠ
ଧରନ୍ତି ଶୋଣିତ ଚେଷ୍ଟା ଅଙ୍ଗେ ହର ହର । ୩୨ ।

ସ୍ଥୂଳତା ଭଜଲା କ୍ରମେ ଲଭି ଖମଣ୍ଡଳ
ସ୍ଥିର ଗନ୍ଧ ସୁଶୀତଳ ବହଇ ଅନିଳ,
ଅଗନ୍ତ ଗୋପ ତରୁଣୀ ଶୁଣି ପିକରୁତ
ଥିରେ ଶଶି ବପୁ ପାଇ କୁମୁଦ ଫୁଲ୍ଲିତ । ୩୩ ।

ଦଳିତ କହ୍ଲାର ବନଜବନ ଯମୁନା
ଦଣେ ଅରବିନ୍ଦବୃନ୍ଦ ଅତ୍ୟନ୍ତେ ବିମନା,
ଦେଖି କାମଶରେ ଛନ୍ନ ହେଲେ ଗୋପାଙ୍ଗନା
ଦୀନବନ୍ଧୁ କର ଶ୍ୟାମଘନକୁ ସୁମନା । ୩୪ ।

---

ଲେଖକ : ଶ୍ରୀଧର

## ନବଘନ ଚଉତିଶା

( ରାଗ-ବଙ୍ଗଳାଶ୍ରୀ )

କହିବ ସାରସ- ଗଡକ ଗଡକ
କର ଧୀରେ ନବଘନ,
କଲେ ଅନୁଗ୍ରହ ଜଗତେ ଜଗତେ
ତାହାକୁ ବୋଲନ୍ତି ଧନ୍ୟ । ୧ ।

ଖରସ୍ୱାସ ତେଜ ରମଣୀର ମଣି
ରଜନୀକରରେ ଶୋଇ,
ଖଣ୍ଡ ପର୍ଶୁ ନାମ ଭ୍ରିଷିବ ଭ୍ରଷିବ
ସ୍ୱନତ କରିବ ନାହିଁ । ୨ ।

---

ଖମଣ୍ଡଳ—ଆକାଶ । ରୁତ—ଧ୍ୱନି, ଶବ୍ଦ ।

ଗରବରେ ଫୁଟେ  ବସନ୍ତେ ବସନ୍ତେ
ବନପ୍ରିୟବାଣୀ ଶୁଣି,
ଗରବ ହକାଇ-  ନମଣି ସ୍ୱରୂପ
ସବୁ ପତରକୁ ମଣି । ୩ ।

ଘଡ଼ଘଡ଼ ଧ୍ୱନି  ନକରିବ, କଣ୍ଠ-
ବତ କୁମ୍ଭସ୍ତନା ଗୋପୀ,
ଘଡ଼ିକେ ଚେତନା  ଦୂର ହେବ ରହେ
ବସୁଥିବ ଟନ୍ଗା କରି । ୪ ।

ନୀରଜ ନୟନୁ  ନୀରତ ଝରତ
ସଶତ ପର୍ଏ ବନ୍ଧୁ,
ନବୀନା ହୃଦୟ  ପ୍ରପାତ ପ୍ରପାତ
ହୋଇ ପଙ୍କଜକୁ ବନ୍ଧୁ । ୫ ।

ଚରମରେ ବେଣୀ  ଖସି ପଡ଼ୁଥିବ
ପଡ଼ୁଥିବ ସଖୀ ତଳେ,
ସ୍ଥିରୁ କୁନ୍ଦନାକ୍ଷୀ  ମାର ବୀର ଶରେ
ବିରସରେ ଥିବ ବଳେ । ୬ ।

ଛନ ମନ ଲଭି  ● ଖାଡ ଭର ଭଭି
ଭର ଦେଇ ଉଠୁଥିବ,
ଛଟକଦୃଶା ଆ-  ହାରକୁ ହାରକୁ
ଗରଭୁଜଙ୍ଗ ମଣିବ । ୭ ।

ଜୀବନ ମୋ ବିନା  ତେଜିବ ତେଜିବ
ଭୂଷଣମାନ ସୁନ୍ଦରୀ,
ଜୀବ ଜୀବନକୁ  ହେଳାଇ ହେଳାଇ
କହୁବ ମୋ ନାମ ଧରି । ୮ ।

ଝଟକ ହାଟକ-  ବରନା ବରନା
ଧରି ରଖିଅଛୁ ପ୍ରାଣ,
ଝରଝର ପରି  ଶରଧାର ଶର
ଧାର ମାର ବରଷଣ । ୯ ।

ଞସ୍ୱଣେ ଖିପିଲେ      ଦସ୍ତାନ୍ତୁ ଦସ୍ତାନ୍ତୁ
ହ୍ୱୋଇ କନ୍ଦିବ ମୋ ହୃତେ,
ନବ ରତ୍ନଦନୁ      ତାହା ରସ ରସ
ସ୍ମରଣ କରେ ଏକାନ୍ତେ । ୧୦ ।

ଟଳପଡୁଥିବ      ମୋହନଲାଗି ମୋହ
ଲାଗି-ପକ୍ଷ-ବିମ୍ବାଧର,
ଟିକର ଟୋପନ      ମଣିବ ମଣିବ
ଗ୍ରମସୂତ ଯୁଗ ପର । ୧୧ ।

ଠଣ-ଉରଜାର      ପଲଙ୍କ ପଲକ
ନ ପଡ଼ିବ ମୋତେ ଭାଳ,
ଠିକେ ପଲ୍ଲବ ତ-      ଳପ ତଳପରେ
କରୁଥିବ ଆଳ ଭାଳ । ୧୨ ।

ଡମ୍ବରୁଧାରଣ      ଅଭିଶ ଅଭିଶ
କରି ଦେଉଥିବ ସାରି,
ଡରେ ନୋହୁଥିବ      ବାହାର ବାହାର
ତାଡନ୍ତ ଥିବ ବାହାରି । ୧୩ ।

ଢଳପଡୁଥିବ      ସଖୀଙ୍କ ଉରକୁ
ଉରକୁ କରି କାତର,
ଢାଲେ ମଣୁଥିବ      ଅବଲା ବଲାକୁ
କାରାବନ୍ଧନ ପ୍ରକାର । ୧୪ ।

ଅନାଦର କରି      ଭୂଷଣ ଭୂଷଣ
ଭୂଷା ରହୁଥିବ ଖାଲି,
ଅଞ୍ଜନେ ରଞ୍ଜନେ      ଝଲକେ ଝଲକେ
ନ କରିବ ଚକ୍ଷୁ ବାଲୀ । ୧୫ ।

ତଡ଼ିତ ଦେଖିଲେ      ବାଳୀଶ ବାଳିଶ
ପରି ହେବ ଅବିରତେ,
ତରଳାନୟନା      ଅପୂନ ଅପୂନ
ଦେଖି ଲେଖିବ ଆଉତେ । ୧୬ ।

ଥିଲଭରଜାଲ୍ସ ଲଭିଲ ଲଭିଲ
ନବ ରତନ କ କରେ,
ଆଢ କଣଥିଲ ମାର ମାରଣା ଡା'
ଧର ପଳାଇଲୁ ଖରେ । ୧୭ ।

ଦରକଣ୍ଠୀ ନ କ- ଶବ ଦର ଦୂର
ଦରଦୁରବାଣୀ ଶୁଣି,
ଦେହଲ ନ ଆସି- ବ ହିଁ ଦମ୍ଭହସ
ଦମ୍ଭ ହସଇବ ପୁଣି । ୧୮ ।

ଧସ୍ମଣ୍ଡନା ସ- ମାନ ମାନବରେ
ମାନବରେ ନାହିଁ ନାସ୍ତି,
ଧସ୍ଧରସ୍ତନା ଦେବଜ ଦଳିତ
ଦଳିତ ଅସ୍ତ୍ରନଗିସ୍ତ । ୧୯ ।

ନରେଖି ନଡ ମୋ ସୁମନା ସୁମନା
ପୁଞ୍ଜେ ଭୃଙ୍ଗ ଦେଖିକଣ,
ନୋହୁବ ହୃଦରେ ସୁଗୁଣ ସୁଗୁଣ
ମନୋଜର କଏ ସ୍ମରଣ । ୨୦ ।

ପରମଦା ସର- ଡ ବଦା ଚମକବ
ଚମକବ ବିଦୁ ଯେବେ,
ପଞ୍ଚଦଶ ଶଶି- ଆନନା ଆନ ନା-
ଗସ୍ତି କ ଭିଡ଼ିବ ଭବେ । ୨୧ ।

ଫରଲନସ୍ତନା ବକ୍ଷ ଦରପଣ
ଦରପଣ ନ ଗୃହିବ,
ଫେଟିଥିବ କଟି- ରସନା ରସ ନା-
ମକୁ ମନେ ଭାବୁଥିବ । ୨୨ ।

ବାନ୍ଧବୀକ ବକ ଦେଲ ହେ ମୃଦର
ମୃଦର ନାଦେ ମୋ ପ୍ରାଣ,
ବାସରେ ବାସରେ ଦେବୁ କ ରତ କ-
ରତ ଥିବ ଜୀବଧନ । ୨୩ ।

ଭବମୋହିନୀଙ୍କ ଭ୍ରମିଲି ଭ୍ରମିଲି
ମଦନସ୍ରୋତରେ ମୁହିଁ,
ଭଜିଲି ଭୃତ୍ୟଙ୍କୁ ଏତେ ଅନାଦର
ଅନା ଦରପଣମୁହିଁ । ୨୪ ।

ମନ୍ଦହାସ କରି ଚଳିଲି ଚଳିଲି
ପରସ୍ପେ ହୋଇ ବାନ୍ଧବୀ,
ମନରୁ ନଯାଏ ସେମାନ ସେ ମାନ
କରିଥିବା ମୋତେ ଭାବି । ୨୫ ।

ଜୀବେଶ୍ୱରୀଙ୍କ ମୁଁ ଟେକିଲି ଟେକିଲି
ନାହିଁ ଜୀବନ କପାଇଁ,
ଜୀବନ ବସ୍ତ୍ରେ ଜୀବନ ଜୀବନ
ଜୀବର ଯେସନ ହୋଇ । ୨୬ ।

ରସାଳସା ବାଣୀ ଅମିୟ ଅମିୟ
କର ବଦନେ ଶ୍ରବଇ,
ରହିବ ରସିକ ବାସରେ ବାସରେ
ସୁରତ ଇଚ୍ଛିବ ନାହିଁ । ୨୭ ।

ଲଳିତାଙ୍ଗୀ ସ୍ତନେ ୯ କରପୂର କର
ପୂର କରିଦେଲି ଘଷି,
ଲଜେ ନ ସ୍ପିଲି ରସ ପରବୀଣା
ପରବୀଣା ବାଣୀ ହସି । ୨୮ ।

ବଳୟ ଖଞ୍ଜିବ ଶ୍ରୀକରେ ଶ୍ରୀକରେ
ଧରି ସ୍ପିଲି ବାଳାକୁ
ବୋଇଲି ସରୋଜ- ବଦନା ବଦନା
ଗଳି ବଜାଇ ବଳାକୁ । ୨୯ ।

ଶିଷାଙ୍ଗୀ ଢଳେ ଶମ୍ଭୁନେ ଶମ୍ଭୁନେ
ଚେତନା ହଜାଇଥିଲି,
ଶୀର୍ଷୁଁ କଟିରୁ ମୁଁ ଫେଡ଼ିଲି ବସନ
ବଶନ ହୋଇଣ ଗଲି । ୩୦ ।

ସରଦ ସରୋଜ- ମୁଖଙ୍କ ମୁଦ୍ଧି କ
କ ବୋଲି ସ୍ନେହରେ ଭଣି,
ସରସବଚନା ରଚନା ରଚନା
ଏମାନ ବ୍ୟାଜରେ ପୁଣି । ୩୧ ।

ସରୋବର ରୋଧେ କୋକ କୋକନଦ
ପଦ୍ମେ ଭୃଙ୍ଗ ଦେଖୁଥିଲ,
ସଧୀରେ ଭଣିଲ ଏମନ୍ତ ଏ ମନ୍ତ୍ର
ହେବ କ ରଉକୁଶଳା । ୩୨ ।

ହରଷ ବରସ ନକର ନକର
ଅଙ୍ଗିକାର ଗଲ୍ପ ଗୋଷ୍ଠି
ହୃଦରେ କରୁଛ ଘୃଣାଣ ଘୃଣାଣ
ତେଜ ହେ ଉଦକଧାତ୍ରି । ୩୩ ।

କ୍ଷସ୍ତ ହେଲ ପଶ୍ୟ ବଳର ସନ୍ଧି
ସନ୍ଧି ତେଜିଲି ମୁଦ୍ଧି,
କ୍ଷେଦନ୍ଦ୍ରେ ସଙ୍ଗେ ଶିଖିଧର ଶିଖ-
ଧର ରଖ କୃପାବନ୍ଧ । ୩୪ ।

---

ରତ୍ନାକର—ଚନ୍ଦ୍ର । ସ୍ତନିତ—ମେଘଗର୍ଜନ । ତରମ—ପୃଷ୍ଠଦେଶ । ଗରଳ୍ଭୁଜଙ୍ଗ—ବିଷଧର ସର୍ପ । ହାଟକ—ସୁବର୍ଣ୍ଣ । ଭୂଷଣ—ଅଳଙ୍କାର । ବାଳୀଣ—ରମଣୀଶ୍ରେଷ୍ଠା । ଦରଦୁର—ଦର୍ଦ୍ଦୁର—ବେଙ୍ଗ । ଧରାଧର—ପର୍ବତ । ଦେହଳି—ଦ୍ୱାରବନ୍ଧ । ପରମଦା—ପ୍ରମଦା (ନାରୀ), ପରମପଦ ପ୍ରଦାନକାରିଣୀ । ସରବଦା—ସର୍ବଦା, ସବୁବେଳେ । ମୁଦିର—ମେଘ । ଉଦକଧାତ୍ରି—ମେଘ ।

ଲେଖକ : ଶ୍ରୀଧର

# ଗୃଷ୍ଟୁ ଚଉତଶା

( ରାଗ—କାମୋଦୀ )

କୁନ୍ଦ ସୁନ୍ଦର ଦନ୍ତୀ          ଦନ୍ତୀରାଜ ସୁଗତି
ଦେଖ ସୁମନ କାଳଗତି
କର୍ପାଉଁ ରୁ ବମତ          ହେଲୁଆରେ ସୁମତ
ମନୋଜ ରଖିବ କି ନଥ ରେ, କୁରଙ୍ଗାକ୍ଷୀ
କୁସ୍ରିତ କାମବନ୍ଧେ ଯୋଖି
କେ ବା ରଖିବ ପ୍ରିୟ ସଖି
କୋକନ କଲ କଲ          ଶୁଣି ହୃଦ ବିକଳ
କଲନା କେ ପାରିବ ଲେଖି ରେ । ୧ ।

କ୍ଷୀଣ ମଧ୍ୟମା ଶ୍ୟାମା          ନାହିଁ ତୋତେ ଉପମା
ସମାନ ଏ ମହୀ ମଣ୍ଡଳେ
ଖରେ-ନରଜା ଦୃଷ୍ଟି          ରଜା ସୁରସେ ମଙ୍କା
ଲଙ୍କା ତେଜି ବସ ମୋ କୋଳରେ, ଖଣ୍ଡବାଣୀ
କ୍ଷୀର ନୀର ପୀରତ ଆଣି
ଖଣ୍ଡନ କଲ କୃଶପାଣି
ଖଗ ଈଶ୍ୱର ଈଶ          ଶିଷ୍ଟ କରିବ ନାଶ
ଶରବ୍ୟ କରି ଶର ଶ୍ରେଣୀ ରେ । ୨ ।

ଗଉରୀ ବର ନାଥ          ସେବାରୁ ତୋ ସଙ୍ଗତ
ଲଭିଥିଲୁରେ ମଦାଳସୀ
ଗତ ହେମନ୍ତ ସୁରତ          ପାଶୋରିଲୁ ସୁମତ
କଟାକ୍ଷେ ନ ଚାହୁଁ ଯା ହସି ରେ, ଗୋସ୍ୱବର
ଗାଲଦେଇ ଶୁଣାଅ ଗିର
ଗଲା ଜୀବ ରଖ ଶରୀର
ଘଣ୍ଟେ ମଣ୍ଡ ଚୁମ୍ବନ          ମନରୁ ତେଜ ମନ
ମାନିନୀ କର ସିଉକାର ରେ । ୩ ।

ଘନ ସାର ସୁହାସୀ        ଖୀଣା ଜଣା ସୁନ୍ଦରି
ଭସିଲ ମାର ସ୍ରୋତେ ଆସି
ଘଟସ୍ତନା ଆଦରେ        ଜାନୁରମ୍ଭା ଭେଳାରେ
ଲଗାଅ କୂଳେମନ୍ଥ ତୋଷିଣିରେ, ଘନକେଶୀ
ଘନେ ମୋ ଅପଘନେ ମିଶି
ଘୃଣାରେ ଭଡ଼ ବାନ୍ଧୁ ଫାଶୀ
ଘଡ଼ି ଘଡ଼ିକେ ନାଡ଼ି        ଗୁଡ଼ି ଯାଉଛି ହଡ଼ି
ରତି ରସାୟନ ଦଅସି ରେ । ୪ ।

ନାଗରୀ ଶିରୋମଣି        ସମନ ସଂମ୍ମୋହନୀ
ସୁମନ ମାର୍ଗଣ ଖଣ୍ଡିନୀ
ନବ ଅନୁରାଗିଣୀ        ନୋହୁ ହେଲୁ ରାଗିଣୀ
ଧରଣୀ ଶିରସ ମଣ୍ଡିନୀ ରେ, ନବବାଳା
ନୀଳ କୁନ୍ତଳା ରସଶାଳୀ
ନଦ୍ୟା ଆଳସେ ଢଳେ ଢଳ
ନୟନରେ ଦେଖିଲି        ଧୀରେ ଧୀରେ ମୁ ଗଲି
ଧଇଲି ନବ ବନ୍ଧ ଛଳ ରେ । ୫ ।

ଚମକାପଡ଼ି ସଖୀ        ଚରମେ ଦେଲୁ ଗ୍ରହି
ଚଞ୍ଚଳ ଡୋଳା ଖେଳାଇ
ଚଳି ଉଠିଲୁ ସଖୀ        ନ ପାରଇ ମୁଁ ସହି
ଧଇଲି କୋଳକୁ ଲୁଆଇ ରେ, ଚନ୍ଦ୍ରମୁହିଁ
ଚକିତ ହୃଦଥାଇ ରହି
ଚେତନା ମୋର ବୁଡ଼ିଯାଇ
ଚଞ୍ଚଳେ ନେଇ ଗଲେ        ବାହୁ ଲଗାଇ ବଳେ
ଧଇଲେ ଶେଯେ ରହୁ ଶୋଇ ରେ । ୬ ।

ଛଇଳୀ ରମାମଣି        ତୋ ନୀଳ ନାଶାମଣି
ଦୋହଲିବ କି ? ଆଜ ପୁଣି
ଛଳ ଭାଷିଲୁ ଶୁଣି        କି କଥା ଜାଣୁ ମଣି
ରମଣୀ ଗ୍ରହୁଁ ଧନ ମଣି ରେ, ଛଟକାକ୍ଷୀ
ଛୁର ମାଇଲା ମାର ଯୋଖି
ଛନ୍ନେ ଯା ଗଲୁ ପାଶୁଁ ସଖୀ
ଛଡ଼ ଦଶ ବୟସୀ        ଶିରେ ମୋ ଶତକୋଟୀ
ମାଡ଼ ପଡ଼ିଲା ହେଲି ଦୁଃଖୀ ରେ । ୭ ।

ଯଉବନ ସରସୀ ଲାବଣ୍ୟ ଜଳରାଶି
ମଧ୍ୟେ ମନ ହଂସ ବିଳାସି
ଜାଣି ବିଚ୍ଛେଦ ବ୍ୟାଧ ଶବର ରଢ-ପଢ
ଧରି ବୁଲେଇ ଯେଣୁ ପାଣି ରେ, ଜୀବେଶ୍ୱର
ଯିବା ଜୀବନ ରଖ ଧରି
ଜନରେ ଥିବ ଯଶ ପୂରି
ଯଶ ଚନ୍ଦ୍ର ପ୍ରକାଶି ଅଦେହ ଧ୍ୱାନ୍ତ ନାଶି
ଲୀଳା ବିଳାସୀ ତୁ ମୋ ଶିଷ୍ୟ ରେ । ୮ ।
ଝାଡ଼ ପଢ ମଧ୍ୟମା ତୁ ସିନା ସୁଖ ସୀମା
ତୋ ଲାଗି ମୋହର ଗରିମା
ଝିଙ୍କ ଝାଙ୍କିଲାପରି ଝମକ ସମ୍ଭାରି
ଗିରେ ଭରିଲୁ ତନୁ ସୀମା ରେ, ଝସ ନେତ୍ରୀ
ଝଷଧ ମନୋଜର ଚନ୍ଦ୍ରା
ଝୀନ ବସନା ସ୍ୱରୁ ନେତ୍ରା
ଝୁଙ୍କି ଝୁଲାଇ ଗଲୁ ବେଳେ ଧଇଲୁ ବଳେ
ରହିଲୁ ନିଷ୍ଠଳେ ଅନ୍ତା ରେ । ୯ ।
ଞତମ୍ବିନୀ ଞତମ୍ବ ଦେଖି ଶୋଭା ଆରମ୍ଭ
ପରିରମ୍ଭକୁ ମନ ବଳି
ଞୀଳ ନଳୀନ ତୋଳା ଭାଳେ ଖୋସିବା ଲୀଳା
ବସି ମୋ କୋଳେ କଲୁ କେଳି ରେ, ଞାଶ୍ୱବର
ନ ଭାଷୁ ଏବେ ମୃଦୁ ଗିର
ଞମିଷେ ନ ହେଉ ଅନ୍ତର
ଞଣି ପ୍ରାନ୍ତେ ରତାନ୍ତେ ବସନ କରୁ ମୋତେ
କେ ଶିଖାଇଲା ଏ ମନ୍ତ୍ର ରେ । ୧୦ ।
ଟାଳବୃ ଘାନେ ଦନେ ଗଲୁ ସଖୀ ସଦନେ
ମଦନେ ହେଲି ଜର ଜର
ଟାକି ରହିଲି ସଖି ତାପ ନ ସହୁ ମସ୍ତି
ପଲଙ୍କେ ଶୋଇଥିଲି ମୁହିଁ ରେ, ଟେକସ୍ତନା
ଟାହି ଟାପରି ଆଳି ମେଳେ
ଟଙ୍କାର କାମ ପିକ ମେଳେ
ଟଙ୍କଧର ମଉଳି ମଣ୍ଡନ ପୂର୍ଣ୍ଣ ମୁହିଁ
ଦେଖି ରହିଲୁ ଲଜ୍ଜାବଳେ ରେ । ୧୧ ।

ଠୂଳ ଗୁମ୍ଫ ନିତମ୍ବ        ବକ୍ଷ ଶୋଭ ଆରମ୍ଭ
ଶାଢ଼ି ସାରସା ବଳ ଧଣ୍ଡ
ଠିକେ ଯାଉଛୁ ଜଣ୍ଡ        ଦେଖିଲେ ମାର ଧାଣ୍ଡ
ଲଗଇ ଅଙ୍ଗେ ଘଣ୍ଡ ଘଣ୍ଡ ରେ, ଠାରଦୂଣୀ
ଠ'କାର ରସେ ଥିଲେ ରସି
ଠିକେ ହୋଏ ମାର ବଦେଶୀ
ଠଣ ଘନ ଉରଜା        ତେଜ୍ୟା କରଣ ଲଜ୍ଜା
ଗାଢ଼େ ଯିବ ମୋ କୋଳେ ରସି ରେ । ୧୨ ।

ଡାଳମ୍ବ ବୀଜଦନ୍ତୀ        ଡରଏ ରଡପତ
ତୁ ଆଜ୍ଞ ଆଜ୍ଞ ମୋତେ ନଡ
ଡାକ ସେ-ବାରେ ବାରେ        ରଖାଅ ଧୀରେ ଧୀରେ
ସାଜବ କୁନ୍ଦ ମାଳତୀ ରେ, ଡମ୍ବରୁକ
ଡାକୁଛୁ ଅସମ କଟିକ
ଡର ରହୁଲ ଶିବେଡକ
ଡୋଳା ଆରମ୍ଭ ହେଜ        ଗେଲମ୍ବ ଦମ୍ଭ ତେଜ
ଗଜବେ ଲୁଟଲ କସିକ ରେ । ୧୩ ।

ଢାଉ ଅଧସ୍ତ ଧର        ପଲଙ୍କେ ବସିକର
ବସାଇଥିଲ ଢନେ ଅଙ୍କେ
ଢକା ବଜାଇ ମାର        ତୁଣ୍ଢବାବେଳେ ଶର
ଦ ପଡ କଲ ମୁଁ ନିଃଶଙ୍କେ ରେ, ଢଳମୁଣ୍ଡି
ଢଳିଲୁ ନିଦ୍ରାବଶେ ରୁହି
ଢାଳେ ମୁଁ ଅପସର ହୋଇ
ଢଳାଇ ଦେଲ ନାହିଁ        ଶିବ ରଜନୀ ହୋଇ
ରହିଲ ଏବେ ସ୍ୱର୍ଗ୍ୟ କାହିଁ ରେ । ୧୪ ।

ଅମର-ବର ପଦ        ନନ୍ଦା ଲଭନ୍ତା କାନ୍ତ
ପଦରେ ଖଞ୍ଜି ଦେଲେ ବଳା
ଅବଳା ମନ ବଳା        ନୟନେ ଦେବ କଳା
କଳାବତୀ ରତ କୁଶଳା ରେ, ଅନୁପମା
ଆଦରେ ସ୍ୱଗର୍ଣ୍ଣେ ମକରା
ଆଦର ଶଖଟିବ ରୋଷ
ଅଣିମାଦରେ ବାଣୀ        କରବ ସୁଖ ସିଦ୍ଧି
ଦେବଙ୍କୁ ଅଧିକ ଏ ଶିଷ୍ଟ ରେ । ୧୫ ।

ଢଳ ପ୍ରସୂନ ଘୋଣା ପୃଚ୍ଛେ ଖଞ୍ଜିବ ଗୁଣ
ଗୃଣୋନ ତୁ ମୋର ନବ୍ବନା ।
ଢଳକ ଦେଇ ଖ୍ୱଲେ ବୃନ୍ଧି ରହ୍ୱଲେ ଭଲେ
ରହୃଦ କ ମୋର ବେଦନା ରେ, ତରଳାକ୍ଷୀ
ଢଳକ ତୁ ମୋ ପ୍ରାଣ ସଖୀ
ଢଳେ ମୂର୍ଚ୍ଛିଲେ ହୋଇ ଦୁଃଖୀ
ତମାଳକେଶୀ ନଶୀ ଢବସ ଶୋଷବଷି
ନୟନ ମନେ ଥିଲୁ ରଖି ରେ । ୧୬ ।
ଥିର ଗମନା ଥିର ଭଜିଲୁ ସ୍ୱଚ୍ଛୁଗୀର
ଶୁଣି ମଣ୍ଡିଲୁ ଗଳେ କର
ଥର୍ଛ ଅପଢନ ଘନ ଘନ ଚୁମ୍ବନ
ପ୍ରି ତନ୍ୱାପେ ମିଶ୍ର ଅଧର ରେ, ଅଳକୁମ୍ଭ
ଥରେ ଲଗାଅ ଚୁଞ୍ଜି ସଞ୍ଚା
ଥିର ମଣ୍ଡନା ମୋତେ ବଞ୍ଚା
ଥଲ ସରେଜ ଶିଖ ହ୍ୱଶ ମୁଖ ମାଧୁସ୍ତ
ଡାବୁଣ ମୋର କଲୁ ପଞ୍ଚା ରେ । ୧୭ ।
ଦରକଣ୍ଠି ନଦର ହ୍ୱେଲୁ ତୋର ଆଦର
ଦରଭ ମୃଦୁହ୍ୱାସ ଦେଖି
ଦୟାରେ ପାଶେ ରଖି ଆଅ ପ୍ରାଣ ପ୍ରେୟସୀ
ଦେବ ପାର୍ବିକ ପାଦେ ଲେଖି ରେ, ଦରହାସୀ
ଦରିଦ୍ର ମୁଁ ରତନ ଗଣ୍ଠି
ଦୂର ନକର ରେ ବମ୍ବୋଷ୍ଠୀ
ଦୟାଶୀଳା ବୋଲାଇ ଦୟା ନକଲେ ସଖି
ନଷ୍ଟେ ତ ହୃଦ ଯିବ ଫାଟି ରେ । ୧୮ ।
ଧସ୍ୱଧର ଉରଜା ରସି ରସନା ବଜା
ଶୁ ।ଅ ବୀଣା ଜଣା ବାଣୀ
ଧୀରେ ଶ୍ରବଣେ ପଶି କାମ କଳୁଷ ନାଶି
ରତ ମୁକତ ହେବ ଆସି ରେ, ଧୀସ୍ୱବାଳୀ
ଧସ୍ୱ ମଣ୍ଡନା ତୁ ମୋ ଶିଖ
ଧ୍ୟାନ ହେବ କ ବସ୍ତ୍ର
ଧଣ ସବା ଅଧସ୍ୱ ଉରଜ ସମ୍ଭୁ ଶ୍ରିଷ୍ଠ
ଅର୍ଦ୍ଧେନ୍ଦୁ ଦେବ ଶୋଭ୍ର କଣ ରେ । ୧୯ ।

ନଳିନୀ ନୋହୁ ସଖି   ହାସ ମୁଖ ମାଧୁରୀ
ଚନ୍ଦ୍ର ଚନ୍ଦ୍ର, ବଦନ ନଥ
ନୀରେ ଅନାରେ ଯାଇ   ମାର୍ଜନେ ସୁଧା ପାଇ
ପ୍ରକାଶେ କି ଆନନ ପୀଠ ରେ, ନିତମ୍ବିନୀ
ନଟନ୍ତେ ମୁକୁର ଝଟଣୀ
ନଉନେ ବାସେ ରହେ ଜାଣି
ନୀଳ ବସନା ଗୋପୀ   ଖେଳେ ଉଲଜ କରି
ଦେବ ସିନ୍ଧୁର ବନ୍ଧୁ ଆଣି ରେ । ୨୦ ।

ପଞ୍ଚଶର ପରଶ   ଲଭିଲେ ନୋହୁ ସାତ
କୃଷ୍ଣଙ୍କ ଭଜଇ ସଧୀରେ
ପ୍ରୀତି ପରସ ସ୍ୱରେ   ସରେ ସେହ ସଦୃଶ
ମୋ ମନ ଲୋହ ସେ ବିଧିରେ ରେ, ପରମଜା
ଏରେ ନ କର ସରବଦା
ପରମ ଦୟାଳୁ ସୁହୃଦା
ପରଶନ ବଦନୀ   ଯେଉଁ କି ମନେ ଘେନ
କଲେ ଚମ୍ପାରେ ହେବ ନିନ୍ଦା ରେ । ୨୧ ।

ଫାଟି ନଟଲ ହିଆ   ବିଦେଶେ ପ୍ରାଣପ୍ରିୟା
ହରନ ସଙ୍ଗ ଗୁଣ ଘେନ
ଫୁଟୁଣା ହେଲ ସହି   କରୁଣା କର ଗ୍ରହି
ନ ଗଲା ଏ ବିରହ ଆର୍ତ୍ତି ରେ, ଫୁଲସର
ଫୁଲଇ ଧନୁ ଧରି କର
ଫାଳ ଫାଳ କରିବ ହର
ଫରଳ ତରଳାକ୍ଷୀ   ଦେଖିବୁ ହୋଇ ସାକ୍ଷୀ
ଏ ନିନ୍ଦା ହୋଇବ କାହାରତେ । ୨୨ ।

ବଳିତ ମଲ୍ଲୀହାର   ମଲ୍ଲୀର ଅନ୍ତେ ମ୍ଳାନ
ନବୀନା ନବରସେ ହନ
ବଳା ମଞ୍ଜୀର ନାଦ   ନାଦରେ ହୃଦଖେଦ
ଗ୍ରନ୍ଥି ସିବକ ଗ୍ରନ୍ଥୁଁ ଗ୍ରନ୍ଥୁଁ ରେ, ବନଜାକ୍ଷୀ
ବକ୍ଷେ କୁନ୍ତଳ ନାଚବକ
ବଢଣାଙ୍କ ବସୁର୍ଦ୍ଧି ସଖୀ
ବଧିରେ ଦୟାଶୀଳା   ମାର ମତେ ବାଉଳା
କରିଛୁ କି କହିବ ଲେଖି ରେ । ୨୩ ।

ଭବ ମୋହନୀ ଭବ      ପ୍ରଥମ ହୃଦ ଭବ
ଶିରେ ପାଣି ଦେଇ ବୋଲିବ
ସ୍ୱପନେ ଭିନ୍ନ ହୋଇ      କେଶିକ ଯିବ ନାହିଁ
ଜୀବ ଥିବାରେ ଥିବ ସେବ ରେ, ସ୍ୱବବତୀ
ସ୍ୱବ ରହିଛୁ ଦବାରୂଢ
ଭବ ମଧ୍ୟରେ କେ ମୋ ଗଢ
ଭବ ଜନକ ନନ-      ଶଲ୍ଲ କପାଁ ଏମନ୍ତ
ଦୃଢ଼ରେ ଉଦ୍ଧବାକୁ କଢ ରେ । ୧୪ ।

ମଦାଳସୀ ରସାଳ      ଶିରେ ବସି କୋକିଳ
କଲ କଲପନା କରଇ
ମୋ ମନେ ବସ୍ତୁରଇ      ଆକାର ହେବ ସହି
ସହିବା ଭର୍ଜନ କ ମୂର୍ଦ୍ଧି ରେ, ମନ୍ଦସ୍ୱାକ୍ଷୀ
ମାର ମାର୍ଗଣ ଗଣ ଯୋଖି
ମାଳେବ ହୃଦେ ପ୍ରେଷ୍ଣୁ ସଖୀ
ମନେ ବସ୍ତୁର ନାଷ୍ଟ-      ବର କଟାକ୍ଷେ ମାର
ମାର ମନ୍ଦରେ ଧର ଋଷି ରେ । ୧୫ ।

ଯୁଗ ହେଲ୍ଲ ଜଗମ      କୁ ମୋର ସମାବର
ଯୁଗ ନୋହିବାରୁ ତୋହର
ଜୀବ ଜୀବେଶ ପୁର      ଯିବାକୁ କଲ୍ଲ ମୂଳ
ସ୍ତନ ସଂପୁଷ୍ଟ ଗୋସ୍ୱ ରେ, ଜୀବେଶ୍ୱରୀ
କହିଁ ଥିବାରୁ ମୁଁ ତୋହର
ଜୀବକା ଅଟ ରୁ ମୋହର
ଜବାଧରୀ ତୋ ପଛେ      ଗ୍ରୀଇ ପରଏ ସ୍ୱଚ୍ଛେ
ଅହର୍ନିଶିରେ ବାସ ପଣ ରେ । ୧୬ ।

ରସ ଲସୀ ଅଳସ      ଭାଙ୍ଗିବା ବେଳେ ବାସ
ଉରଜ ମୃତ୍ତୁ ଗଲ୍ଲ ଖସି
ରସି ରସିକ ଭ୍ରଷ୍ଟି      ଦୁର୍ଦ୍ଦଶା ଗଲ୍ଲ ଆସି
ଦର୍ଶନ ହେଲ୍ଲ କାଶିବାସୀ ରେ, ରସବତୀ
ରଜତ ବସାରେ କ ଆସି
ଚଢ଼ିଲେ ଶମଶାନବାସୀ
ଉହସେ ମୁଁ ହରସେ      ପୂଜ ପାଣି ସାରସେ
ବରଷେ ଦେବ ଦୁଃଖ ଧ୍ୱଂଶି ରେ । ୧୭ ।

ଲଭିବାକୁ ଶରଣ ବରଅଙ୍ଗ ଶରଣ
ବର ବରଜ ହେବେ ସତେ
ଲଭେ ମାନ ନ କର କଣ୍ଠ ଶଠ କ କଣ
କଣବ ଦସ୍ୟା ତାର ଚନ୍ଦ୍ରେ ହେ, ଲେଲନେତା
ଲଳିତ ବେଶେ ଅଙ୍କେ ବସି
ଲୀଳାରେ ଶୁଣାଇବ ଖଷେ
ଲୀନ ହେବ ମଦନ ଚାପ ଅଙ୍ଗେ ବର୍ଜନ
ସିଞ୍ଚଣ ହାସ ସୁଧା ଗଣି ରେ । ୨୮ ।
ବୃଦ୍ଧିରେ ବୁଧପଣ ବୃଦ୍ଧଜନଙ୍କ ଶିଶ
ହରଛୁ ଲପନ ମାଧୁରୀ
ବକାଶ କାଶ ଭବ କସ୍ଲ ହାସ ଉଦ୍ଭବ
କର ଆନନ୍ଦକର ଗୋଷ୍ଠ ରେ, ବସ୍ରେହା
ବଳଳ ହେଉଛୁ ମୋ ହିଆ
ବଳ ଶୋଭନା କେ ମୋ ସାହା
ବାଳୀଶ ବୋଲି ସଖି ହେଲୁକ ଚହିଁ ସ୍ନେହ
କାହାରେ କହିବ ମୁଁ ଏହା ରେ । ୨୯ ।
ଶୋଭଙ୍ଗୀ ପାନ ଭଙ୍ଗି ଦେବ ଗରଜ ଭଙ୍ଗି
ଯିନ ସରକଣ୍ଠ ପ୍ରାଭବ
ସୁପକ୍ୱ ବମ୍ବାଂଶ ..ଧର କରେ ସକାଡ଼
ଦେବ ଲେଟିବ ଶାଢ଼ି ଭୂବ ରେ, ସୀମନ୍ତନୀ
ସୀମଥାନ କାନୁରେ ଘେନ
ସାରବ ସତେ ନଶିଥନା
ଶସ୍ୱନେ ଘନ ସ୍ତନେ ଶଶୀଚୂର୍ଣ୍ଣ ଚନ୍ଦନେ
ଘନେ ଘସିବ କରେ ଘେନ ରେ । ୩୦ ।
ସମ୍ବର ପର ନାଶ ସମାନ ଯାହା କଣ-
ବାର ନୁହଇଁ କସିଗଠ
ସବୁ ଜନ୍ମେ ବଚ୍ଛେଦ ଲଭି ହୃଦରେ ଖେଦ
ସଲଜ୍ଜେ ବୋଲାଇଲ ବଢ ରେ, ସୁକୁମାରୀ
ସାର ଉପମା ମାନହାର
ସର୍ଣ୍ଣେ ଦଳିତ ଶରଣ
ସୁଷମା ନୋହୁ ସର ଛଳକ ଅନୁସର
ଛଳକ ହୋଇଲ ବସ୍ତ୍ର ରେ । ୩୧ ।

ସୁର ତରଙ୍ଗୀ ତୀରେ　　　ସୁର ତରଙ୍ଗିଣୀରେ
ବନ୍ଧୁ କ ଅଛୁ ତୋତେ ବନ୍ଧୁ
ସାରସ ଚକ୍ରବାକ　　　କୁମୁଦ କହ୍ଲାରକ
ଶୈବାଳ ହଂସ ଜାଲ ଅନ୍ଧ ରେ, ସୁଲୋଚନା
ଶ୍ରୀଅଙ୍ଗେ ସଂଶ୍ରିତ ହୋଇ
ସୁନାଭି ଭଉଁରୀ କ ବନ୍ଧୁ ରୋମାବଳି
ସୁଲୋମା ବଳିଗଠ　　　କୁନ୍ତଳ ନଖପଂକ୍ତି
ହାସ କୁଚ ଲପନ ଶୋଭୁ ରେ । ୩୨ ।

ହରଷେ ହାସ ସ୍ନିଗ୍ଧ　　　ସନ୍ଧ ଦବସ ନେଇ
ବଶରେ ହାସେ ଥିବ ରନ୍ଧ
ହା ଶିବ, ଶିବ, ଶିବ　　　ବୋଲି ନୋହିଲୁ ଶିବ
ଶିବ ମୋହିନୀ ନୋହେ ସଙ୍କରେ, ହାଟକାଙ୍ଗୀ
ହର ରଜନୀ ମାନ ଭଙ୍ଗ
ହଟ ନ କର ପ୍ରାଣସଙ୍ଗୀ
ହେବେର ବାସ ଆଶ　　　ନ କଶ ଆସ ପାଶ
ଦାସରେ ହୁଅ ଅନୁରାଗୀ ରେ । ୩୩ ।

କ୍ଷମା ସାଗର ଘନ　　　ସାର ବରନ ଧାନ
ହର କମଳ ଚକ୍ଷିଁକାଗ
କ୍ଷେତ୍ର କଣ୍ଟ ମର୍ଦନ　　　ଆରତ ବିନାଶନ
ହରତ ବାସ ସ୍ନେହ କର ହେ, କ୍ଷମାକର
କ୍ଷେମ ରଖିଛୁ ହରିହର
ଖ୍ୟାତ କ୍ଷିତିରେ ନାମ ଯାର
କ୍ଷେମ ପ୍ରଦ ସାରସ　　　ପଦରେ ଦେଇ ହୃଦ
ପଦରେ ଭଷିଲୁ ଶ୍ରୀଧର ହେ । ୩୪ ।

———

# କବି-ପରିଚୟ

**ଅଚ୍ୟୁତାନନ୍ଦ**—(ପଞ୍ଚଦଶ ଶତାବ୍ଦୀର ଶେଷ ପାଦ ଅଥବା ଷୋଡ଼ଶ ଶତାବ୍ଦୀର ଆଦ୍ୟ ଦଶକ) ତିଳକଣା, କଟକ । ବହୁ ପୌରାଣିକ ଗ୍ରନ୍ଥ, ଗୀତା, ସଂହିତା, ଭକ୍ତି ସଙ୍ଗୀତ ଓ ଚଉତିଶାର ପ୍ରଣେତା ।

**ଅଭିମନ୍ୟୁ ସାମନ୍ତସିଂହାର**—( ୧୭୫୭-୧୮୦୬ ) ବାଲିଆ, ଯାଜପୁର । ବିଦଗ୍ଧ ଚିନ୍ତାମଣି କାବ୍ୟ ପ୍ରଣେତା ଓ ଶୁଦ୍ଧା ଭକ୍ତିମାର୍ଗର କବିରୂପେ ପ୍ରଖ୍ୟାତ ।

**କରୁଣାକର ଦାସ**—(୧୯ଶ ଶତାବ୍ଦୀ ?) ପରିଚୟ—ଅଜ୍ଞାତ । ଏହାଙ୍କ ରଚିତ ଏକମାତ୍ର ଚଉତିଶା 'କଳାକର ଚଉତିଶା' ଭଗବତ୍‌ପ୍ରସାଦ୍, ଜମାପଡ଼ା, ପୁରୀରୁ ପ୍ରାପ୍ତ ପୋଥିରୁ ସଂଗୃହୀତ ।

**କପିଳେଶ୍ବର ବିଦ୍ୟାଭୂଷଣ**—(୧୯ଶ ଶତାବ୍ଦୀ) ସୁନ୍ଦରପଦା, ଭୁବନେଶ୍ୱର, ପୁରୀ । ରଚନା—ରାମବିଳାସ ଓ ବହୁ ଗୀତରଚନା ।

**କାଶୀନାଥ କର**—(ଅଷ୍ଟାଦଶ ଶତକର ଶେଷ ପାଦ) ବାରଙ୍ଗପାଲି, ସମ୍ବଲପୁର । କବି କୃଷ୍ଣ କରଙ୍କ ପିତା ଭକ୍ତକବି । କୃଷ୍ଣ କରଙ୍କ ଭାଷାରେ 'ରୂପ ପ୍ରାଏ ବିପ୍ରବର ପିତା କାଶୀ କର, କୋଟିଏ ଗାୟତ୍ରୀ କରିଥିଲେଟି ସାର' । ତାହାଙ୍କ ଚଉତିଶା କୃଷ୍ଣ କରଙ୍କ ନାତି ଶ୍ରୀ ଦେବାଚରଣ କରଙ୍କ ସୌଜନ୍ୟରୁ ପ୍ରାପ୍ତ ।

**କୃତ୍ତିବାସ**—ଜୀବିତକାଳ ଓ ଜୀବନବୃତ୍ତାନ୍ତ ଅବଧି ଅଜ୍ଞାତ । କବି ପୁରୀ ଜିଲ୍ଲା ନିବାସୀ ହେବା ସମ୍ଭବପର । ସାକ୍ଷିଗୋପାଳ ନିକଟବର୍ତ୍ତୀ ବିରିକି ଗ୍ରାମରେ ଅବସ୍ଥିତ ବାଲୁଙ୍କେଶ୍ବରଙ୍କ ଉଦ୍ଦେଶ୍ୟରେ ଏହାଙ୍କ ରଚିତ ଜଣାଣଟି ଓଡ଼ିଶାରେ ବିଶେଷ ଜନପ୍ରିୟ ।

**କୃଷ୍ଣ କର**—(୧୮୦୧-୧୮୯୪) ବାରଙ୍ଗପାଲି, ସମ୍ବଲପୁର । ରଚନା—କୃଷ୍ଣବିହାର, ରଘୁନାଥବିଳାସ କାବ୍ୟ ବ୍ୟତୀତ ପନ୍ଦର ପୋଇ, କେତେକ ଚଉତିଶା ଓ ଭକ୍ତି ଗୀତିକା ।

**କୃଷ୍ଣ ଦାସ**—ଜୀବିତକାଳ ଓ ଜୀବନବୃତ୍ତାନ୍ତ ଅଜ୍ଞାତ । ଏହାଙ୍କ ରଚିତ 'ମିତଣୀ ଦାଣ୍ଡଧୁଆ' ନୟାଗଡ଼ କେଶରପୁର ଗ୍ରାମନିବାସୀ ଜଗନ୍ନାଥ ସାହୁଙ୍କ ଗୃହରୁ ଓ ଶ୍ରୀ ସୋମନାଥ ପଟ୍ଟନାୟକଙ୍କ ସୌଜନ୍ୟରୁ ପ୍ରାପ୍ତ ଏକ ପୋଥିରୁ ଗୃହୀତ ।

**ଗୌରଚରଣ ଅଧିକାରୀ**—( ୧୮୧୪—୧୮୯୦ ) ଲେହଙ୍ଗ, ଖୋର୍ଦ୍ଧା । ରାଧାକୃଷ୍ଣ ଲୀଳାତ୍ମକ ବହୁ ଚୌପଦୀ, ଚୈତନ୍ୟ ବନ୍ଦନା ଓ ପୁରୀ ଜଗନ୍ନାଥଙ୍କ ପାଦାବ୍ଜ ବର୍ଣ୍ଣନାତ୍ମକ ବହୁ ସଙ୍ଗୀତ ଏବଂ କେତେକ ଚଉତିଶାର ରଚୟିତା । ପ୍ରକାଶିତ ସଂକଳନ—ଗୌରକୃଷ୍ଣ ଭଜନଶତକ (ପ୍ର. ପ୍ର. ୧୯୨୭), ଗୌରଚରଣ ଗୀତାବଳୀ (୧୯୫୧)

**ଚତୁର୍ଭୁଜ ପଟ୍ଟନାୟକ**—( ଊନବିଂଶ ଶତାବ୍ଦୀର ଶେଷ ଭାଗ )—ବାଲେଶ୍ୱର । ରଚନା—କେତେକ ଭକ୍ତି ସଙ୍ଗୀତ ଓ ଜୀବନ ଚଉତିଶା ।

**ଦନେଇ ଦାସ**—( ଅଷ୍ଟାଦଶ ଶତାବ୍ଦୀ ) ରଚନା—ଗୋପୀଭାଷା (କାବ୍ୟ), ସାନ କନଡ଼ା ଚଉତିଶା, ପଦ୍ମଲ ଚଉତିଶା, ଯଶୋଦା କୋଇଲି ।

**ଦ୍ୱାରକା ଦାସ**—(ଅଷ୍ଟାଦଶ ଶତାବ୍ଦୀ) ଗୁପ୍ତ ଗୀତା, ପ୍ରେମରସ ଚନ୍ଦ୍ରିକା ବ୍ୟତୀତ ସପ୍ତପୋଇ, କେତେକ ଚଉତିଶା ଓ ଭକ୍ତିଗୀତ ପ୍ରଣେତା ।

**ନିଧି ରଥ**—(ଅଷ୍ଟାଦଶ ଶତାବ୍ଦୀ ?) ଧରାକୋଟ, ଗଞ୍ଜାମ । ରଚନା—ରତ୍ନସାର (ଅନୁବାଦ), ଭଲମନ୍ଦ ଚଉତିଶା । ଏହି ଚଉତିଶାଟି ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥିରୁ ଗୃହୀତ ।

**ପାର୍ବତୀ ବୈଷ୍ଣବୀ**—( ଊନବିଂଶ ଶତାବ୍ଦୀ ) କବି ସମ୍ବଲପୁର ଅଧିବାସୀ ହେବା ଅନୁମେୟ । ଏହାଙ୍କ ରଚିତ 'ରାଧାବିରହ ଚଉତିଶା' ସମ୍ବଲପୁର ମହାନ୍ତିପଡ଼ାରୁ ୧୮୯୨ ମସିହାରେ ଭଗବାନ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ।

**ବଳଭଦ୍ର ଭଞ୍ଜ**—( ୧୭୨୪—୧୭୯୨ ) ୧୭୫୧ରେ କେନ୍ଦୁଝର ସିଂହାସନାରୂଢ଼ ହୋଇଥିଲେ । କବି ବ୍ରଜନାଥ ଏହାଙ୍କ ନାମରେ 'ଅମ୍ବିକା ବିଳାସ' କାବ୍ୟ ଭଣିତା କରିଥିବା ଜଣାଯାଏ । କେତେକ ଚଉପଦୀ ଓ 'ଜଳଧର ଚଉତିଶା'ରେ ମଧ୍ୟ ଏହାଙ୍କ ନାମ ଭଣିତାରେ ଦେଖିବାକୁ ମିଳେ ।

**ବକ୍ସ ଦୁର୍ଗେଶ**—ବାଙ୍କିର ରାଜା । ଏହି ଭଣିତାଯୁକ୍ତ ଚଉତିଶାଟି ବାଙ୍କି ଅଞ୍ଚଳରୁ ପ୍ରାପ୍ତ ଏକ ପୋଥିରୁ ଗୃହୀତ । ଏହା ସମ୍ଭବତଃ 'ଶଶିରେଖା' କାବ୍ୟ-ପ୍ରଣେତା ପଦ୍ମନାଭ ଶ୍ରୀଚନ୍ଦନ (୧୭୩୫-୫୭)ଙ୍କ ରଚନା ।

**ବଲ୍ଲଭ ଦାସ**—(ଊନବିଂଶ ଶତାବ୍ଦୀ ?) ପରିଚୟ ଅଜ୍ଞାତ । ରଚନା—କେତେକ ଭଜନ ଓ ଚଉତିଶା ।

**ବ୍ରଜରାଜ ସିଂହଦେବ**—(୧୯ଶ ଶତାବ୍ଦୀ) ଖଣ୍ଡିଆଳର ରାଜା । ବହୁ ଗୀତକାବ୍ୟ ପ୍ରଣେତା ।

**ବଳଦେବ ରଥ** (କବିସୂର୍ଯ୍ୟ)—(୧୭୮୯—୧୮୪୫) ବଡ଼ଖେମଣ୍ଡି, ଗଞ୍ଜାମ । 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ', 'ରତ୍ନାକର ଚମ୍ପୂ' କେତେକ ଚଉତିଶା ଓ ଶତ ଶତ ଚୌପଦୀ-ରଚୟିତା ତଥା ଓଡ଼ିଆ ଗୀତ-ସାହିତ୍ୟର ଅନ୍ୟତମ ବିଶିଷ୍ଟ କବି-ଭାବେ ସ୍ମରଣୀୟ । ବାଲୁଙ୍କେଶ୍ୱର ହରିଚନ୍ଦନଙ୍କ ନାମରେ ଭଣିତା ହୋଇଥିବା 'ମୋହନା' ଚଉତିଶାଟି କବିଙ୍କର ଅନ୍ୟତମ କୃତି ।

**ବିଷ୍ଣୁ ଦାସ**—(ସପ୍ତଦଶ ଶତାବ୍ଦୀ) ରଚନା—ବହୁ ଚଉତିଶା, ପ୍ରେମଲୋଚନା କାବ୍ୟ । ଅପ୍ରକାଶିତ 'ପ୍ରବେଶ ଚଉତିଶା'ଟି ସଂକଳୟିତାଙ୍କ ସ୍ୱଗୃହସ୍ଥ ପୋଥିରୁ ଗୃହୀତ ।

**ଭଗବାନ**—ପରିଚୟ ଓ ଜୀବତକାଳ ଅଜ୍ଞାତ । ଏହାଙ୍କ ରଚିତ 'ଯୋଗୀନ୍ଦ୍ର ଦାଣ୍ଡଧୂଆ' ନୟାଗଡ଼ କେଶପୁର ଗ୍ରାମନିବାସୀ ସୋମନାଥ ପଟ୍ଟନାୟକଙ୍କଠାରୁ ପ୍ରାପ୍ତ ପୋଥିରୁ ଗୃହୀତ ।

**ଭୁବନେଶ୍ୱର କବିଚନ୍ଦ୍ର** (୧୭୬୮—୧୮୧୪) ଗଞ୍ଜାମ । ରଚନା—ବହୁ ଚୌପଦୀ, କୀର୍ତ୍ତନ ଓ ଚଉତିଶା ।

**ରଘୁନାଥ ରାଜ ହରିଚନ୍ଦନ**—(ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ) ବାଣପୁରର ରାଜା । ଗୀତ ରଚନା—'ଚନ୍ଦ୍ରମୁଖୀ ଚଉତିଶା' ଓ କେତେକ ଚୌପଦୀ ।

**ରାମ ଦାସ**—ପରିଚୟ ଓ ରଚନାକାଳ ଅଜ୍ଞାତ ।

**ଲୋକନାଥ ଦାସ**—(ଊନବିଂଶ ଶତାବ୍ଦୀ ?) ଅପ୍ରକାଶିତ ଜାନକୀ-ସ୍ମରଣ ଚଉତିଶାଟି ବାଙ୍କୀପୁର କମାପଡ଼ାନିବାସୀ ଶ୍ରୀ କ୍ଷେତ୍ରମୋହନ ନାୟକଙ୍କ ଗୃହରୁ ସଂଗୃହୀତ ଏକ ପୋଥିରୁ କଳ୍ପିତ ।

**ଲକ୍ଷ୍ମୀନାରାୟଣ**—ପରିଚୟ ଓ ରଚନା ଅଜ୍ଞାତ । ଅପ୍ରକାଶିତ 'ଚଟାଉ ଚଉତିଶା' ।

**ସୁଦର୍ଶନ**—(ଊନବିଂଶ ଶତାବ୍ଦୀ) ପଶ୍ଚିମ ଓଡ଼ିଶାର କବି । ସେ ମହିମାଧର୍ମୀ ଥିଲେ । ରେଢ଼ାଖୋଲରୁ ପ୍ରାପ୍ତ ଏକ ପୋଥିରୁ ଏହାଙ୍କ ୨ଟି ଚଉତିଶା ଗୃହୀତ । ପୋଥିରେ ଚଉତିଶା ଦୁଇଟିର ନାମକରଣ ହୋଇ ନଥିଲା ।

**ସୋମନାଥ ସିଂହ ଜଗଦେବ**—(୧୮୧୪-୧୫—୧୮୫୩) ଅନୁଗୋଳର ଶେଷ ରାଜା । ଧଳାଗଡ଼ ଜେଲରେ ରାଜବନ୍ଦୀଭାବେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ରଚନା—ବହୁ ଚଉପଦୀ ଓ ଚଉତିଶା ।

**ଶ୍ୟାମଘନ**—(ଊନବିଂଶ ଶତାବ୍ଦୀ ?) ବହୁ ଚଉତିଶାର ପ୍ରଣେତାଭାବେ ସୁପରିଚିତ ।

**ଶ୍ରୀଧର**—(ଊନବିଂଶ ଶତାବ୍ଦୀ ?) ଜନ୍ମସ୍ଥାନ ଓ ଜୀବନବୃତ୍ତାନ୍ତ ଅଜ୍ଞାତ । ଏହାଙ୍କ ରଚିତ ଦୁଇଗୋଟି ଅପ୍ରକାଶିତ ଚଉତିଶା ସୋନପୁର ଘୋଡ଼ାଘାଟପଡ଼ା ଶ୍ରୀ ଗୋଲୋକ ନାଥ ବନ୍ଧଦାରଙ୍କ ଗୃହରୁ ପ୍ରାପ୍ତ ଏକ ପୋଥିରୁ ଗୃହୀତ । ଏହା ଶ୍ରୀ ଦେବେନ୍ଦ୍ର ଚନ୍ଦ୍ର ସାହାଣୀ, ସମ୍ବଲପୁରଙ୍କ ସୌଜନ୍ୟରୁ ମିଳିଥିଲା ।